# ଜଳତରଙ୍ଗ

—: କଟକ ଚନ୍ଦ୍ରା ବାଇମୁଣ୍ଡିଙ୍କ :—

ଅଧ୍ୟାପକ ନାରାୟଣ ଶତପଥୀ

ପୁସ୍ତକ ଭଣ୍ଡାର
ବ୍ରହ୍ମପୁର -୧

# ଜଳତରଙ୍ଗ

*

ରଚନା—

**ଅଧ୍ୟାପକ ନାରାୟଣ ଶତପଥୀ ଏମ. ଏ.**
ଖଲ୍ଲିକୋଟ କଲେଜ, ବ୍ରହ୍ମପୁର,

*

ପ୍ରକାଶକ—
**ଶ୍ରୀ ନିତ୍ୟାନନ୍ଦ ଦାସ**
ପୁସ୍ତକ ଭଣ୍ଡାର, ବ୍ରହ୍ମପୁର—୧

*

ପ୍ରଚ୍ଛଦ ଶିଳ୍ପୀ—
**ଶ୍ରୀ ବିପିନ ବିହାରୀ ସାହୁ**
ବ୍ରହ୍ମପୁର

*

ପ୍ରଥମ ପ୍ରକାଶ—
**୧୯୬୮**

*

ମୁଦ୍ରଣ—
**ନିଉଷ୍ଟୋର୍ସ ପ୍ରେସ୍**
ବ୍ରହ୍ମପୁର—୨

*

**ମୂଲ୍ୟ—** ତିନି ଟଙ୍କା ମାତ୍ର

# କେତେକ କଥା

କେତେ କଥା ମନକୁ ଆସେ, ସବୁ କଣ କହି ହୁଏ ? ଲେଖିବସିଲେ ଲେଖି ହୁଏନା । ଯେତେକ ବି ଲେଖି ହୁଅନ୍ତା ସେଥିରୁ କେତେ ମନେ ପଡେନା । ତେଣୁ ଏ'ଠି କେତୋଟି କଥା କହୁଛି ।

ଏ ନାଟରେ ବିଷୟବସ୍ତୁ କେଶରୀ ବଂଶର ଅମଳିନ କୀର୍ତ୍ତି କାଠଯୋଡ଼ୀର ପଥର ବନ୍ଧ ଓ ପଥର ବନ୍ଧର ଅନୁଚିନ୍ତକ ବାଇଧରକୁ କେନ୍ଦ୍ର କରି । ବାଇଧର ଇତିହାସର ନୁହେଁ; ଲୋକ କଥାର । ଏବେ ବି ଲୋକ ଚଳଣିରେ ରହିଯାଇଛି-"ବାଇମୁଣ୍ଡି କାଛୁ ଖାଇନାହିଁ ଧନଭୁଣ୍ଡି" । ଠାଏ ଠାଏ "ବାଇମୁଣ୍ଡ କାଛୁ ଖାଇନାହିଁ ଧନଭୁଣ୍ଡ" କେଉଁଠି ଖାଲି 'ବାଇମୁଣ୍ଡ' ବା 'ବାଇମୁଣ୍ଡ'ର ପୁନରାବୃତ୍ତି । ଏବେବି ଏହା ପିଲା ବୁଝାମଣାରେ ଜମିବସିଛି । ସନ୍ତୋଷରେ, ଆନନ୍ଦରେ ଆଉ ବା କେତେବେଳେ ଅଯଥା ଅବୁଝା ଶିଶୁ ମୁଣ୍ଡ ହଲାଏ । ହୁଏ ବାଇମୁଣ୍ଡ ବା ବାଇମୁଣ୍ଡି ।

ଆଉ ଗୋଟାଏ କଥା ଏବେ ଚଳେ । ସେଇଟା ହେଉଛି— "କଟକ ଚନ୍ଦ୍ରା ବାଇମୁଣ୍ଡିକି ।" କେତେବେଳେ କେଉଁ ଅର୍ଥରେ ଏହା ପ୍ରଯୁକ୍ତ ହୋଇଥିଲା କେଜାଣି ? ବର୍ତ୍ତମାନ ଏହା ଏକ ବ୍ୟଙ୍ଗାତ୍ମକ ପ୍ରକାଶ ।

ସୁନ୍ଦର ବିରୋଧାଭାଷ ନା ସରସ ସ୍ୱଭାବୋକ୍ତି ? କେଉଁଟି ସତ୍ୟ ? ? କେଉଁଟି ଗ୍ରହଣୀୟ ? ? ?

ଛନ୍ଦ କବି ରାଧାମୋହନ ଗଡନାୟକଙ୍କ 'ଜହ୍ଲିକା'ର ବାଇମୁଣ୍ଡି ଚରିତ୍ର ମୋତେ ପ୍ରଭାବିତ କରିଥିଲା । ଅବଚେତନ ମନର ଅତଳ ଗହ୍ୱରରେ ସମାଧିସ୍ଥ ହେବା ବେଳେ ଲୋକ ଚଳଣିରେ ଏହାର ଅପପ୍ରୟୋଗ କିପରି ସମ୍ଭବ ହେଲା ତାର କୌଣସି କିନାରା ପାଇଲିନି । ମେଘର ଆଟୋପ, ନିରନ୍ଧ୍ର ଅନ୍ଧକାର ଭିତରେ ବିଦ୍ୟୁତର ସ୍ଫୁରଣ ଚତୁର୍ଦ୍ଦିଗକୁ ଆଲୋକିତ କଲାପରି ଠିକ୍ ସେତିକି ବେଳକୁ ପିଲାର ମୁଣ୍ଡ ହଲାଇବା ମୋ ମନରେ ଆନ୍ଦୋଳନ ସୃଷ୍ଟି-କଲା । ଏଇଥିରୁ ବିଭିନ୍ନଭାବେ ବାଇମୁଣ୍ଡିକୁ ଜାଣିବାକୁ ମନ ଚଂଚଳ ହୋଇ ଉଠିଲା । ଅନେକ ଲୋକଙ୍କୁ ପଚାରିଲି––ସେଥିରୁ ଖୁବ୍ କମ ଲୋକ ହିଁ ମୋତେ ଗଡନାୟକଙ୍କ କବିତା କଥା କହିଲେ । କେତେକ ଇତିହାସ ଅଧ୍ୟାପକଙ୍କ ସହିତ କଥାବାର୍ତ୍ତା କଲି, ମନଃପୂତ ହେଲାପରି କିଛି ନପାଇ ଦେଶୀ ବିଦେଶୀ ଐତିହାସିକମାନଙ୍କ ପ୍ରସିଦ୍ଧ ଅପ୍ରସିଦ୍ଧ ଲେଖା ଖୋଜିଲି । ବାଇମୁଣ୍ଡିର ନାମଗନ୍ଧ ବି ପାଇଲିନି ।

ସମସ୍ତ ଗଡରେ ମନର ଗତି ବଢି ଚାଲିଲା । ପୃଷ୍ଠପୋଟିକା ସମୟର ଇତିହାସ····  ।

ବିଷୟଟି ସମ୍ବନ୍ଧରେ ସ୍ଥୂଳ ଧାରଣା ଆଣିବାକୁ ପ୍ରତିଦିନ କିଛିନାକିଛି ଚେଷ୍ଟା କରୁଛି । ପ୍ରାୟ ଦେଢ଼ ବର୍ଷ ପରେ ଯାହା

ଦେଖିଲି ତା'; ଅତି କ୍ଷୁଦ୍ର ରୂପଟିଏ । ତଥାପି ତା' ଭିତରେ 'ବାଇଧର' ଚରିତ୍ର ମୋତେ ବଡ଼ ନାଟକୀୟ ଜଣାଗଲା ।

ସାବଳା କୃଷକ··· ବାଇଧର ବି କୃଷକ··· ଧରମା, ବାଜି କୃଷକ ନହେଲେ ବି କୃଷି ପରଂପରାର । କୃଷି ସଭ୍ୟତାର ଯେମିତି ପ୍ରତୀକ ଏମାନେ··· । ଏମାନଙ୍କ କାରିଗରୀରେ, ଭାଷା ଓ ସାଂସ୍କୃତିକ ଯେମିତି ସଜୀବ ହୋଇ ଉଠିଛି । ଆଜି ପରିଭାଷା ପରିକା, ସିଂହରୁ ସିଂ ବା ସିନ୍ଧୁ ହେଉଛି;ଅଥଚ କଳିଙ୍ଗ ସଭ୍ୟତାକୁ ସ୍ୱାଙ୍ଗ ପୂର୍ବ ପୁରୁଷର ଦାନ ଅମାପ ଏହାହିଁ ମୋ ମନରେ ସବୁବେଳେ ଗୁମୁରି ଉଠୁଛି ।

ଯାର ଭିତରେ ମୋ ମନରେ ରୂପରେଖ ନେଇ ଥିବା କଥାବସ୍ତୁକୁ କେନ୍ଦ୍ରକରି କାହା କାହା ସହିତ ଆଲୋଚନା କରିଛି, ଚର୍ଚ୍ଚା କରିଛି ।

ମୋର ଦୃଷ୍ଟି ନାଟ୍ୟକ ମଣିଷ ନୁହେଁ, ପ୍ରକୃତ···ସ୍ରୋତସ୍ୱିନୀ କାଠଯୋଡ଼ୀର କବିଳତା·

ଆଧିକାରିକ ବାଇଧର ଯୋଗୀ, ନୀରବ କର୍ମଯୋଗୀ··· ଧୈର୍ଯ୍ୟର ପ୍ରତୀକ···ସାଧନା ତାର ଏକମୁଖୀ ।

ସପନା ! ବୁଦ୍ଧିମାନ, ବିଚକ୍ଷଣ ପୀଠମର୍ଦ୍ଦ···

ସାରିଆ ! ଓଡ଼ିଆଣୀର ବେଶଭୂଷା ରୂପ ଓ ଗୁଣର ପରିମାପକ···ସାମାଜିକ ଚଳଣିରେ ସେ ସ୍ୱାଗତକାରୀ ଅଗ୍ରଗଣ୍ୟା ।

ସିଙ୍ଘା ଷଗ୍ଗୁରବାନ୍ । ଲୋକମତ ତଥା ଗାଜକୋଷର ଦୁର୍ଦ୍ଦାନ୍ତ ରକ୍ଷକ···

ଏତକରେ କି ନାଟକ ହୁଏ ? ଘଟଣାର ବହୁଳତା ନାହିଁ, ରଂଗ ରସର ଚମକ ନାହିଁ । ତରୁଣ ଡାକ୍ତର ବନ୍ଧୁ ଶ୍ରୀ ସୁରେନ୍ଦ୍ର ପ୍ରସାଦ ଦାସ (ଟିକବାବୁ) ବନ୍ଧୁତ୍ୱଦ୍ୱାର ମାଧ୍ୟମ ଟିକୁଦାଦା ଚରିତ୍ରର ସୂଚନା ଅଙ୍କୁର । ସମୟର ପ୍ରବହମାନ ଗତିରେ ଟିକୁଦାଦା ଗ୍ରୀଷ୍ମ-କାଳୀନ କ୍ଷୀଣସ୍ରୋତା ନଦୀ ପରି ଏକ କ୍ଷୀଣ ପ୍ରତନାମୂଳକ ରୂପ ନିଏ···ଲେଖାଗୁଡ଼ିକ ।

ବିଷୟ ବସ୍ତୁର ସ୍ଥିରତା ଆସିବାପରେ କଳାକାର ସୁଲେଖକ ବ୍ୟୋମକେଶଙ୍କ ଇଂଗିତ, ସୁର ସଂଗୀତ ସାଧକ ତରୁଣ ପୂର୍ଣ୍ଣଚନ୍ଦ୍ର, ତୁଷାର କାନ୍ତ, କଳାକାର ନିର୍ଦ୍ଦେଶକ ଦୁଃଖୀରାମ ସ୍ୱାଇଁ ଓ ଶରତ ମହାନ୍ତିଙ୍କ ସୂଚନା ବୈଷୟିକ ଦୃଷ୍ଟିରୁ ନାଟକଟିକୁ ମର୍ଯ୍ୟାଦା ସଫଳ କରେ । କିନ୍ତୁ ମୂଳରୂପ ଦୋହଲିଯାଏ । ଭିନ୍ନ ରୂପରେ ବିଷୟ ଆତ୍ମପ୍ରକାଶ କରେ ।

ମୁଁ ଭାଷାବିତ୍ ନୁହେଁ । ତଥାପି ଏ ନାଟକର ଭାଷା ଓ ଭାବନା ବିଷୟରେ କେତୋଟି ମନକଥା ପ୍ରକାଶ କରିବି ।

ଆଜି ଆମ ସାହିତ୍ୟ ଭଣ୍ଡାରର ଆଦିସ୍ରଷ୍ଟା ସାରଳା । କିନ୍ତୁ ଏ ସୃଷ୍ଟିର ବିଶାଳତା ପ୍ରତି ଦୃଷ୍ଟି ନିକ୍ଷେପ କଲେ ଜଣାଯାଏ ସତେ ଯେପରି ଏ ସାଧନା ପଛରେ ବହୁଶହ ବର୍ଷର ଭାଷା ଲୁଚିରହିଛି । ଲିଖିତ, କଥିତ ଉଭୟ । ମନେହୁଏ ଚିନ୍ତୁଥିବା ମୁଦ୍ରିତ ମାର୍ଜିତ

“ଚର୍ଯ୍ୟାପଦ” ବହୁବର୍ଷଧରି ଲୋକ ମୁଖରେ ଚଳୁଥିବା କଥିତ ଭାଷାର ରୂପାନ୍ତର ।

ପକ୍ଷାନ୍ତରରେ ଦରବାରୀ ଭାଷା ସଂସ୍କୃତ । ଏଭଳି କବି ଚରିତ ଆଲୋଚ୍ୟ । ବ୍ରାହ୍ମଣ ସଂସ୍କୃତଜ୍ଞ କବିର ଆଂଚଳିକ ଭାଷାପ୍ରତି ମମତା, ପ୍ରଗତିର ପକ୍ଷଗ୍ରହୂକ, ଦୂର ଦୃଷ୍ଟିର ଶଂକୁ ଓ ସଂକେତ । ନୂଆ-କଥା ହଠାତ୍ ଗ୍ରହଣ କରିହୁଏନା । ଦେଖାଦିଏ ବିପ୍ଳବ, ବିଦ୍ରୋହ, ଅସନ୍ତୋଷ । ତା'ରି ଭିତରେ କବି ସ୍ଥିର ରହି ନିଜ ଚରିତ୍ରଧାରର ସ୍ୱାତଂତ୍ର୍ୟ ବଜାୟ ରଖିଛନ୍ତି । ନାଟକର ଭାଷା ସେକାଳର ନୁହେଁ । ପ୍ରାଚୀନ ଭାଷା ହୁଏତ ବୋଧଗମ୍ୟ ନ ହୋଇପାରେ । ତେଣୁ ଦୃଶ୍ୟ କାବ୍ୟକୁ ପ୍ରଚଳିତ ଭାଷାରେ ଲେଖା ଯାଇଛି··· ରଖାଯାଇଛି କେତୋଟି ପ୍ରାଚୀନ ଶବ୍ଦ ମାତ୍ର ।

ସ୍ଥାନ ଓ ଅଭିନୟରେ ନାଟକୀୟ ଅଖଣ୍ଡତା ରହିଛି । ନାଟକ ବର୍ଣ୍ଣିତ ଜନ୍ମବର୍ଷକୁ ସମୟର ଏକ ଏକକ ରୂପେ ଗ୍ରହଣ କଲେ ଯୁକ୍ତି ସଙ୍ଗତ ହେବ । କେବଳ ଶାସ୍ତ୍ରୀୟ ଅଖଣ୍ଡତା ପ୍ରତି ଦୃଷ୍ଟି ଦେଇ ଏକ ଐତିହାସିକ ଘଟଣାର ବାସ୍ତବ ଉପସ୍ଥାପନକୁ ଅନୈତିହାସିକ କରିବାର ଦୁଃସାହାସ କରିନି । ଚଳଚ୍ଚିତ୍ର ସହିତ ପରିଚିତ ନାଟ୍ୟ ପ୍ରେମୀଙ୍କ ଲାଗି ଏହା କଷ୍ଟ ନୁହେଁ । ତେଣୁ କାହ୍ନିକବା' ଅବାଟରେ ପଶନ୍ତୁ ।

ଦୀର୍ଘ ଦିନର ଶ୍ରମକୁ ମୁଁ ରୂପାୟିତ କରିବାକୁ ଚେଷ୍ଟା କରିଛି । ପ୍ରକୃତି ମୋର ବଡ଼ ମଂଥର । ଏ ମଂଥରତା ଜାଣି ଜାଣି ନୁହେଁ ।

## ଇତିହାସର ସଂକେତ

ଘଟଣାଟି ଇତିହାସର ନହେଲେ ବି ଐତିହାସିକ । ସେ ସମୟରେ କେବଳ ଉତ୍କଳ କାହିଁକି ସମଗ୍ର ଭାରତୀୟ ଜନଜୀବନ ଥିଲା ନିଶ୍ଚିନ୍ତ···ନିରୁଦ୍‌ବେଗ । ଅଭାବ ଥାଇପାରେ···ହେଲେ ଆଜିର ଅଭାବ ଠାରୁ ତାହା ସଂପୂର୍ଣ୍ଣ ଭିନ୍ନ । ପୁରୁଷମାନଙ୍କ ବିଭିନ୍ନ ଅଳଙ୍କାର ପରିଧାନ, କେଶର ଅପୂର୍ବ ବିନ୍ୟାସ ଥିଲା ସେତେବେଳର ବିଳାସ । ସାଧାରଣ ନାଗରିକ ପାଟ, ମଠା, ଛିଟ, କଟୋଇ, ଉପାନହ ବ୍ୟବହାର କରୁଥିଲେ । ଘରେ ଘରେ ସୁବୃହତ୍ ଦର୍ପଣ, ମଶାରି ପ୍ରଭୃତିର ବ୍ୟବହାର ବହୁଳ ପରିମାଣରେ ଥିବା ଇତିହାସରେ ଉଲ୍ଲେଖ ଅଛି । ନାରୀମାନେ ପ୍ରତିଟି ସାମାଜିକ କାର୍ଯ୍ୟରେ ଅଂଶ ଗ୍ରହଣ କରୁଥିଲେ । ଆଦର, ଅଭ୍ୟର୍ଥନା, ନୃତ୍ୟ-ସଂଗୀତର ପୁରୋଭାଗରେ ଥିଲେ ନାରୀ ।

ଏହି ଦୃଷ୍ଟିକୋଣରୁ ସମଗ୍ର ନାଟକଟି ବିଗ୍ରର କରାଯାଇ ପାରେ·····।

## କୃତଜ୍ଞତା ଜ୍ଞାପନ

ପାଣ୍ଡୁଲିପି ପ୍ରସ୍ତୁତପରେ ଏହାକୁ ମଞ୍ଚସ୍ଥ କରିବାଲାଗି କେବଳ ଆଗେଇ ଆସିନଥିଲେ ଦୃଢ଼ପଦକ୍ଷେପ ନେଇଥିଲେ ତରୁଣ ଶିଳ୍ପୀ ବିପିନ୍ ବିହାରୀ ସାହୁ ଏବଂ ପ୍ରଥମ ଅଭିନୟ ଦୁଇଟି ରଜନୀର ସହକାରୀ ନିର୍ଦ୍ଦେଶକ ଶ୍ରୀ ବିଜୟ କୁମାର ମହାନ୍ତି । ଗଂଜାମ କଳାପରିଷଦର କର୍ତ୍ତୃପକ୍ଷଙ୍କ ଆଗ୍ରହ ପ୍ରକାଶ ଏବଂ ପରିଷଦର

ପ୍ରତ୍ୟେକ କଳାକାରଙ୍କ ଅକୁଣ୍ଠ ଚେଷ୍ଟାରେ ଏହା ରୂପନେଲା । ଗ୍ରନ୍ଥେପ୍ସୁ ଗ୍ରନ୍ଥମଣ୍ଡଳୀ ତଥା ଶୁଭାକାଂକ୍ଷୀ ବନ୍ଧୁମାନଙ୍କ ଉତ୍ସାହ କମପ୍ରେରଣା ଦେଇନ । ସୌଭାଗ୍ୟ, ନୂତନ ବର୍ଷରେ ଏହା ଉଦ୍‌ଘାଟିତ ହେଲା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ନୂତନ କୁଳପତି ଶ୍ରୀଯୁକ୍ତ ଆର. ପି. ପାଢ଼ୀ. ଏମ୍. ଏ. ଆଇ. ଏ. ଏସ୍. ଙ୍କ ଦ୍ୱାରା । ଏମାନଙ୍କ ନିକଟରେ ମୁଁ ଗଭୀର ଭାବେ କୃତଜ୍ଞ ।

ସାମାନ୍ୟ ଅଦଳ ବଦଳରେ ଏହା ଲୋକ ଲୋଚନକୁ ଯାଉଛି । ଏଥିରେ ସଂଗୀତ ରଚନା କରିଥିବାରୁ ପ୍ରସିଦ୍ଧ ତରୁଣ ନାଟ୍ୟକାର ଶ୍ରୀ ରମେଶ ପ୍ରସାଦ ପାଣିଗ୍ରାହୀ ଏବଂ ପାଣ୍ଡୁଲିପି ପ୍ରସ୍ତୁତରେ ସାହାଯ୍ୟ କରିଥିବାରୁ ପ୍ରିୟ ଶ୍ରୀ ରମାକାନ୍ତ ମିଶ୍ର ଓ ରମେଶ ଚରଣ ତ୍ରିପାଠୀଙ୍କୁ ସାଧୁବାଦ ଜଣାଉଛି । ପ୍ରଚ୍ଛଦ ଶିଳ୍ପୀ ଶ୍ରୀ ବିପିନ ବିହାରୀ-ସାହୁ ଏବଂ ପ୍ରକାଶକ ଶ୍ରୀ ନିତ୍ୟାନନ୍ଦ ଦାସଙ୍କ ଆଗ୍ରହ ଲଗି ଶୁଭେଚ୍ଛା ଜ୍ଞାପନ କରି ରହିଲି ।

ବ୍ରହ୍ମପୁର — ଲେଖକ

ବି. ଦଶମୀ ୧୯୬୮ — ଅଧ୍ୟାପକ ନାରାୟଣ ଶତପଥୀ ଏମ. ଏ.

## ଏଇ ଲେଖନୀରୁ

— ঃ০ঃ —

ସମାଲୋଚନା—ଓଡ଼ିଆ ନାଟକ ଓ ନାଟ୍ୟକାର ।

କାବ୍ୟକବିତା— ଏପାରି ସେପାରି

ଅସମାପ୍ତ ହେ କବିତା, ଆରୋଗବି !

ନାଟକ—ଅବସ୍ତ୍ର ଶିଖା

ଫଲଗୁର ବନ୍ୟା

ଯାହାନ୍ତ ଛାଇ

# ଜ-ଳ-ନ୍ତ-ର-ଙ୍ଗ

## ପ୍ରଥମ ଅଭିନୟ ରଜନୀ
## ୧୯୬୮ ଜାନୁଆରୀ ପହିଲା ଓ ଦୁଇ

ଉଦ୍‌ଘାଟକ—ଶ୍ରୀଯୁକ୍ତ ଆର. ପି. ପାଢ଼ୀ ଏମ୍. ଏ. ଆଇ. ଏ. ଏସ.
କୁଳପତି, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର, ଗଂଜାମ ।

ପରିବେଷକ—ଗଂଜାମ କଳା ପରିଷଦ, ବ୍ରହ୍ମପୁର

ପରିଚାଳନା—ଶ୍ରୀ ପ୍ରମୋଦ କୁମାର ସାହୁ, ଏମ୍. କମ୍.

ନିର୍ଦ୍ଦେଶକ—ଶ୍ରୀ ନାରାୟଣ ତ୍ରିପାଠୀ ଏମ୍. ଏ.

ସହକାରୀ—ଶ୍ରୀ ବିଜୟ କୁମାର ମହାନ୍ତି

ଉପଦେଷ୍ଟା—ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ
ବି. ଏସ୍‌ସି. ଏଲ୍. ଏଲ୍‌ବି.

## ରୂପାୟନେ—

ବାୟା—ତ୍ରିପାଠୀ
ସପନା—ବିଜୟ
ଶିବୁ—ଶ୍ୟାମସୁନ୍ଦର
ମର୍କଟକେଶରୀ—ଭାସ୍କର ଚନ୍ଦ୍ର
କବି—ରମେଶ ପ୍ରସାଦ
ଲୋକ—ବାଳକୃଷ୍ଣ
ହାଡ଼ୁ—ରମେଶଚନ୍ଦ୍ର
ପାଣୁ—ବିଶ୍ୱନାଥ

ଶୁଭ—ବାବୁ
ଘର— ନିରୁପମା
ସୁମୀ—ଦେବ୍ୟାଳସ୍ୱା
ସଂଗୀତ ରଚନା—ରମେଶ ପ୍ରସାଦ ପାଣିଗ୍ରାହୀ ବି. ଏ.
ସ୍ୱର ସଂଯୋଜନା—ଶ୍ରୀ ବାଳକୃଷ୍ଣ ଦାସ
ଯନ୍ତ୍ରୀ—ଡେଭିଡ୍, ଗୌର, ରମାକାନ୍ତ, ବେବି, ସଜେନ୍ଦ୍ର
କଣ୍ଠ ଶିଳ୍ପୀ—ବାଚ୍ଚୁ, ନାଜ ର
ନୃତ୍ୟ ନିର୍ଦ୍ଦେଶନା—ଶ୍ରୀ ମୁରଲି ମାଝି ଓ କିଶୋର କୁମାର ମହାନ୍ତି
ନୃତ୍ୟ—ମଧୁଛନ୍ଦା, ରଜଶ୍ରୀ, ପୁଷ୍ପା, ଜୟନ୍ତୀ, କିଶୋର, ଶ୍ରୀନନ୍ଦିତା,
ପ୍ରୀତି।
ଶବ୍ଦ ପ୍ରକ୍ଷେପ—ଗୋପାଳ
ସ୍ମାରକ—କିରଣ ଓ ପ୍ରମୋଦ
ଆଲୋକ—କିଶୋର ଓ କେଦାର
ମଂଚମାସ୍ତା—ବିପିନ ବିହାର ସାହୁ
ରୂପସଜ୍ଜା—ଓଡ଼ିଶା ଚିତ୍ରାଳୟ (କଟକ)
ମଂଚ ପରିଚାଳନା—ନୃସିଂହ, ଗୋକୁଳ, ଚିତ୍ତ, ପ୍ରଦୀପ
ସ୍ଥିର ଚିତ୍ର—କେଦାର ଆପଠ



ନନାଁ ଓ ବୋଉଙ୍କ ଚରଣ କମଳରେ........

ଶାରଣ

୧ ମ ଦୃଶ୍ୟ— ନଦୀବାନ୍ଧ,

୨ ୟ ଦୃଶ୍ୟ— ଗ୍ରାମ ପଥ,

୩ ୟ ଦୃଶ୍ୟ— କକ୍ଷ

୪ ର୍ଥ ଦୃଶ୍ୟ— ଗ୍ରାମ ପଥ

୫ ମ ଦୃଶ୍ୟ— ଶିବିର

୬ ଷ୍ଠ ଦୃଶ୍ୟ— ପ୍ରାନ୍ତର

୭ ମ ଦୃଶ୍ୟ— କକ୍ଷ

# ପ୍ରଥମ ଦୃଶ୍ୟ

[ ପାଦ ପ୍ରଦୀପ ସ୍ତିମିତ । ପ୍ରେକ୍ଷାଳୟରେ ଅଂଧକାରର ସଙ୍କୁଚ । ମଂଚରୁ ଭାସି ଆସୁଛି··· ପୂର୍ଣ୍ଣଗର୍ଭା କାଠଯୋଡ଼ୀରେ ବନ୍ୟା ବତ୍ୟାତର ସୂଚନା । ସମବେତ କଣ୍ଠର ଏକ ଅପୂର୍ବ ଲହର । ମିଶ୍ରବାଦ୍ୟର ତାଳେ ତାଳେ ସମସ୍ତ ସାଗରର ବକ୍ଷ ଚିର ମୂର୍ଚ୍ଛନା ଦର୍ଶକ ପ୍ରାଣକୁ ଆଲୋଡ଼ିତ କରୁଛି । ସ୍ୱର ଲସ୍ୱ ଇଥରର ପ୍ରତିଟି ତରଙ୍ଗକୁ ସ୍ପର୍ଶକରି ବିଲୀନ ହେବା ପୂର୍ବରୁ ସ୍ପଷ୍ଟ ହୋଇ ଉଠିଛି ବଂଶୀର ନିସ୍ୱନ···ବଂଶୀର ସ୍ୱର ସ୍ପଷ୍ଟ, ଲଳିତ···କ୍ରମେ ଏକ ନାରୀ କଂଠର ଗଂଭୀର ସ୍ୱର ମଂଚ ଗର୍ଭରୁ ଭାସି ଆସିଲା···]

ସତରେ···ପଚ୍ଛକୁ କଣ ଆଖିପାଏ ? ଶୁଣି ବିଶ୍ୱାସ କରି ହୁଏନା, ଦେଖି ପ୍ରତ୍ୟୟ କରି ହୁଏନା । ତଥାପି ଅଳସ ମୁହୂର୍ତ୍ତରେ କେତୋଟି ଜୀର୍ଣ୍ଣ ପୃଷ୍ଠାକୁ ଆଲୋଡ଼ନ କଲେ ନାଚି ଉଠେ ବାରୁଣୀ ବେଳାର ଛବି···ଏକ ସ୍ୱର୍ଣ୍ଣ ସଂଧ୍ୟାର ବର୍ଣ୍ଣାଢ଼୍ୟ କାନ୍ତି···ଉଦୟ କାନ୍ତିର ଶୈଶବ, ତେଜୋଦୀପ୍ତ ଯୌବନ ପରିକଳ୍ପନା କରିହୁଏନା—ବିଶ୍ୱାସ, ପ୍ରତ୍ୟୟ ଏ'ତ କଥାର କଥା···

[ ନଦୀରେ କେତୋଟି ନୌକା ପାଲ ଉଡ଼ାଇ ଚାଲି ଯାଉଛି । ଦୂରରୁ ଶୁଣାଯାଉଛି ··]

ନାଉରିଆ ଭାଇରେ···
ଲହରୀ ଚିରି—ଭଉଁରି ଚିରି—
ଭାସି ଭାସି ଯାଆରେ ।।

ନୀଳ ଧାରିଆ ଛୁଇଁ
ଅଞ୍ଚଳ ଉଡ଼ାଇ
ସୁନାଅ ଡଥିରେ
ବୋଇତ ବନ୍ଧାଇ
ମଣିମାଣିକ ପସରା ନେଇ
ଲେଉଟିବୁ ତୁ ଘରେ—
ନାଉରିଆ ଭାଇରେ···

[ ବଂଶୀର ଲହର ଗଂଭୀର ହୋଇ ଉଠିଛି ।
ପୁରୁଷକଣ୍ଠରୁ ପରେ ପରେ ଶୁଣାଯାଇଛି-]

ଅତୀତର ବେଳ ଭୂମିରେ ଉତ୍କଳ
ଇତିହାସର ସେ ଏକ ସ୍ୱର୍ଣ୍ଣ ଯୁଗ । ଆର୍ଯ୍ୟା-
ବର୍ତ୍ତରୁ ଆଗତ କେଶରୀ ବଂଶର ଶାସନରେ
କଳିଙ୍ଗ ଜନତା କଳାରେ ତା' କୌଶଳ,
ତମ୍ର ବକ୍ଷାଦାଣ ଗର୍ଭରେ ତା'ର ବାଣିଜ୍ୟ
ବ୍ୟବସାୟ, ଜୀବନରେ ବିଳାସ ବ୍ୟସନ,
ବୈଦେହିକ ଭୋଗର ପୂର୍ଣ୍ଣ ଅଥଚ ସଂଯମ
ପ୍ରୟୋଗ— ପ୍ରଜ୍ଞାଗର୍ଭା ଜ୍ଞାନର ବିକଚ
ବିକାଶ—ଜନ କଲ୍ୟାଣର ଧର୍ମଧ୍ୟାନ ଧାରଣା
ଆଜି ବିସ୍ମୃତ । ତଥାପି ସ୍ମରଣରେ
ଆସିଲେ ବିସ୍ମିତ ହେବାକୁ ହୁଏ···

[ ବଂଶୀର ଲହରରେ ଗଂଭୀରତା ନାହିଁ···
ଶିଥିଳତାରୁ କ୍ରମେ ଚାରୁଣ୍ୟ ପ୍ରେ.ଲାପିତ—
କାଠଯୋଡ଼ୀର ବଂଧ ଉପରେ ମଣିଷ ଗୁମ୍ଫା
ମୂର୍ତ୍ତିଟି କଣ ଯେପରି କଳନା କରୁଛି ।
କଣ ଯେପରି ନିରୀକ୍ଷଣ କରୁଛି । ମାଇକ୍‌ରୁ
ଭାସି ଆସୁଛି—]

ସେଇ ବିସ୍ମୟ ବିସ୍ମୃତ ବେଳାର ଏକ
ପ୍ରଜ୍ଞାବାନ୍ ପୁରୁଷ, ଏକ ଚିନ୍ମୟ ପ୍ରକାଶ —

ବାଇଧର । ବଡ଼ାନାସୀର ବାଇଧର । ମନରେ ତାର ଅସୁମାପ୍ତ ଚିନ୍ତା । ଉଜ୍ଜ୍ୱଳ ବାଣିଜ୍ୟ କେନ୍ଦ୍ରର ଭବିଷ୍ୟତ ସ୍ଥିତି ଚିନ୍ତାରେ ସେ ଉଦ୍‌ଭ୍ରାନ୍ତ । କାଠଯୋଡ଼ୀର ଉତ୍‌ଫୁଲ୍ଲ ଜଳତରଙ୍ଗ ଉଦାସୀ ପ୍ରାଣରେ ତାର ସୃଷ୍ଟି କରୁଛି ଦ୍ୱନ୍ଦ୍ୱ । ଐତିହାସିକ ସମାଧାନ ପୀଠିକାକୁ ଜାତର ଏ' ଏକ ସିଂହା-ବ-ଲୋ-କନ···

# ଦ୍ୱିତୀୟ ଦୃଶ୍ୟ

[ ଝଡାନାସୀ ଗ୍ରାମର ଶେଷାଂଶ । ହାଡ଼ୁ ବାହାରୁଛି, ଗାଁ ଛାଡ଼ି ଚାଲିଯିବାକୁ । ପିନ୍ଧି-ଥିବା ଲୁଗାଇ ତାର ସଂପଦ । ସଂଗରେ ପାଣ୍ଡୁ, ଲେଙ୍କ, ସପନା, ବାସୁ । ]

ହାଡ଼ୁ — ଆଉ କଣ ଶୁଣିବ ଭାଇ ! ମୋତେ ଆଉ କାହିଁକି ବଳାଉଛ? ମୋର କ'ଣ ଅଛି ଯେ ମୁଁ ଫେରିଯିବି ? ତିରସ୍ତା ବଢ଼ରେ (ଗଦ୍‌ଗଦ୍ କଂଠରେ) ଗୋଟିଏ ବୋଲି ପୁଅ । ଅଶୀ ବରଷର ବୁଢ଼ୀମା' ଚାଲିଗଲା । ତା ସଙ୍ଗରେ ଚାଲିଗଲା ସାତ ପୁରୁଷର ଦଣ୍ଡାଭିମି । ମୁଁ ସୁଦ୍ଧା ଫେରି ଖାଲି ଘରଟାକୁ ଦେଖିବା ଛଡ଼ା ମୋର ହୋଇ ଆଉ କ'ଣ ଥିଲା ।

ସପନା – କକା, ଖ ଲି କ'ଣ ତୁମର ଜକୁଡ଼ ଯାଉଛି ? ତୁମେ ଦେଖି କହିଲ କଏ ଏଥିରୁ ନିସ୍ତାର ପାଇଛି ? ତା' ବେ.ଳ ଆମକୁ ସବୁ···

ଲୋକ—(ଗୃହପୃଷ୍ଠା ମାଶହୋଇ) ହଁ, ଘାନବନ୍ଧୁ ବଂଶଧର ପୁଣି ବୁଡ଼ିଗଲା—। ତୁମ ବଂଶରେ ଥୁଣ୍ଟା ବରଗଛ ଭଳିଆ ତୁମେତ ହେଲେ ଅଛ । ଗାଁର ମମତା ତୁଟାଇ ଦେଇ·

ହାଡ଼ୁ – ଲୋକ, ତୁମମାନଙ୍କର ସ୍ନେହ, ମାୟା, ମମତା କ'ଣ ଭୁଲି ହୃଏରେ ପାଗଳ ? ମୁଁ କ'ଣ ତୁମ ପାଖକୁ କମା ଆସିବନି ? ଆସିବି । ହେଲେ ଏ ମାଟିରେ ମୋ' ପାଇଁ କଣ ରହିଲା କହିଲ ? ଶେଷକୁ ଘରଖଣ୍ଡେ ଥିଲା ଯେ ଅଡଡାଖାଇ ସେ ଖଣ୍ଡିକ ଗୃଲିଗଲା । ନିଜର ଯଢ ଘର ନାହିଁ, ରହିବା ପାଇଁ ଯଢ ପର ଦୁଆରେ, ନା (ଯାଇ ପ.ଉ ସପନା ଡାକରେ ଫେରିପଡ଼ି) ମୁଁ ଫଡକାର ସପନା, ଦେଶ ଡାକବାଟରେ ଫସି ବୁଲିବ । ବୁଲି ବୁଲି ପୁଣି ଫେରି ଆସିବ ଏଇଠିକି, ତୁମମାନଙ୍କ ପାଖକୁ । ଆଉ ଏଣିକି···

ପାଣୁ – ହଇଯେ଼ ଜେନାଏ; ଜଲଘରେ ରହି ନିଆଁକୁ ଡରିଲେ ହେବ ? ତୁମକୁ ଆମେ ଜଣ କହିବା ? ତେବେ କନମ ମାଟି ଛାଡ଼···

ହାଡ଼ୁ – ଜନମ ମାଟି···କାହିଁ ? ଏମିତିତ କେତେ ଲୋକ ଗାଁ ଛାଡ଼ି ଗୃଲିଗଲେଣି । ମୁଁ ଗଲେ ଯେ'ବା କ ଲୋଖାଟାଏ ? (ହାଡ଼ୁ ଗୃଲିଯାଉଥିଲା । ବାପ୍ଧା ପାଖରେ ପହଂଚ ଅଟକି

ଗଲା ।.ପୁରୁଷ ପୁରୁଷର କାନପତ ସେ । ଶିରପା ନାହିଁ ସତ ତଥାପି···। ତୁଟେଁ ତୁହିଁଙ୍କୁ ଗୁହିଁ ରହିଲେ)

ବାପୁ—ହାଡୁ ଜଜା ! ତୁମେ ଗୃଲପିଲ ? ବେଶ ଯାଅ । ଜଣେ ଜଣେ ହୋଇ କେତେ ଗଲେଣି । ତୁମେ ଆଉଜଣେ ଯିବ । ହେଲେ ଜଜା, ତୁମ ବୁଢ଼ୀକୁ ବଂଚେଇବାକୁ ଯାଇ ବୁଢ଼ୀକୁତ ରଖି ପ ରଲନା, ଦୀନବନ୍ଧୁ ଯେ ଗୃଲଗଲା···ତାର ଗଣନା କ'ଣ ପାଶୋର ଦେଲ ? ତାର ସମସ୍ତେ ଧେଇଦାନ ସକାଳୁ ମୁଅ ମୁହିଁରେ ଘରର ଘର ଘୁସି ଯାଇଥିଲେ ତଥାପି ସେ କେଉଁ ସୁଖରେ ଆଗେଇଂଯାଇଥିଲ କକା ? କାହିଁକ ? ତୁମର ଭୂମି ଅଡାଜ ଯାଇଥିଲା । ବାସ ଖଣ୍ଡକ ଘୁସିଗଲା । ହେଲେ ବଡ଼ାନାସୀର ମାଟି,ପାଣି,ପବନ, ମୁଣ୍ଡ ଉପରର ଆକାଶଟାତ କୁ ଆଡେ ଗୃଲ ଯାଇନ ? ତୁମେ ଯଦ୍ଧ ଜାଣିବା ଶୁଣିବା ଲୋକ ହୋଇ···

ହାଡୁ—ସମସ୍ତେ କହୁଥିଲେ । ଶେଷକୁ ତୁ ବ କହିଲୁ ? ଖାଲି ମତେ କହିଦେଲେ ହବନି ବାଇଧର ! ଯ୍ବାର ତ ଗୋଟାଏ ପ୍ରତିକାର କରିବାକୁ ପଡ଼ିବ ।

ବାପୁ—ମୁଁ ତ ତୁମକୁ କହୁଚି କକା; ଯେମିତ ଗୋଟାଏ ସୁବିଧା ସୁଯୋଗ ହେଲେ କିଛୁ ଗୋଟାଏ କରି ହେବ ।

ହାଡୁ—ଯାଇମନ ପଚାଙ୍ଗପ୍ରକୃତ ଏକା କରିବା କ'ଣ ସହଜ ବାପା? ଆଜ ତୁ ଯେମିତ କହି ଆସୁଛୁ ସେଥିରେ ମୋତେ ତୋ

କଥା ଭୁବନେଶ୍ୱର ସରଗକୁ ନଶୁଣି କଲ ଭଳିଆ ଲାଗୁଛି ।

ବାପୁ—ତୁମେ କୁହ କକା ଆଗେ ଏଇଠୁ ଫେରିପିବ । ତୁମେ ରହିବ ବନ୍ଧ୍ୟାନାସୀର ଜଣେ ହୋଇ । ତାପରେ ମୁଁ ତୁମକୁ କହିବ ଆମ ଭାବନା ଭୁବନେଶ୍ୱର ସରଗକୁ ନଶୁଣି ତଆର ନୁହେଁ—ଏଇଟା ରାମଚନ୍ଦ୍ରଙ୍କ ସିନ୍ଧୁର ସେତୁବନ୍ଧ ।

ସପନା—ତା ହେଲେ ହାଡ଼ୁକ'। ରହିଲେ ବାପୁଭାଇ ? ହେ ଲୋକା'ଇ ଆମେ ହାଡ଼ୁକକାର ଘର କରିଦେବା ପର୍ଯ୍ୟନ୍ତ ଗାଁ ଅଭ୍ୟାଗତ ଘର ହାଡ଼ୁକକାର ଘରୁ । କଣ କହୁଚ ବାପୁ'ଇ ?

ହାଡ଼ୁ—ମୋରତ କେହି ନାହିଁ, କିଛି ନାହିଁ । କାହିଁକି ତୁମ କଥା ଭାଙ୍ଗିବ ? ବାଇଧର ପୁଅ ମୋର ପାଟି ଫିଟେଇଲାଣି । ପୁରୁଷ ପୁରୁଷର ଜାନପଡ଼ ସେ । ରାଜା ବଦଳେ ରାଜା, ହେଲେ ବାଇଧର କଥାଟାତ କାମରେ ହେଲା ଭଳିଆ ଦୃଶ୍ୟ ହେଉନ । ଗୁରୁ ପାଞ୍ଚ ଡାକ ବାଟ । ପୁଅ ତୋଡ଼ରେ ସାପ ମୁଣ୍ଡ କଟି ଯାଉଛି । ଆଉ ପଥର ଗୁଣ୍ଡା…

ବାପୁ—କକା, ତୁମେ ଏକଥା କାହିଁକି କହୁଲ ? ଏକାମ୍ର ରାଜ୍ୟର ବିନ୍ଦୁସାଗର…ସେଠିତ ପଥର ବନ୍ଧ ରହିଛି ।

ପାଣୁ—(ହସି) ସେଇଟା ଥିର ଜଳ ସାଆନ୍ତେ…

ବାପୁ—ଧୀର ପାଣି ପଥର କାଟେ । ଚଳପାଣି ନୁହେଁ । ଧୀର

ପାଣିରେ ପଡ଼ି ପଥର ଗୁଣ୍ଡା ହେଉଛୁ ଚଲ ପାଣିରେ ରହିବନା କାହିଁକି ?

ଲେଙ୍କ—ମୁଁ ତ ନେଇଯିବା କହୁଚ । ତୁମେ ମିନା ବୁଝିଲନ । କିନ୍ତୁ ଗୋଟାଏ ମେଘନାଦ ପାଞ୍ଚଶ୍ରୀ ଦାଣ୍ଡିରେ ଠିଆ କରିଦେଲେ ଗଲା···

ହାଡ଼ୁ—ଖାଲି ଅମୁକଠି ହୋଇଛୁ, ସମୁକଟି ହୋଇଛୁ, କହିଦେଲେ ତ କାହୁଏନା ଲେଙ୍କ ?, କାମ ପାଇଁ ମନ ଯେମିତି, କଜରୁ ବ ସେମିତି ଦରକାର ।

ବାପ୍ପା—ମୁଁ ତୁମଙ୍କୁ କଥା ଦେଉଛୁ କକା, ସମସ୍ତେ ହାତକୁ ହାତ ମିଳାଇଲେ, ମୁଁ ଯଦି ଏ କାମ ନ ଉଠାଏ ତେବେ ତୁମ ପାଖରେ ଦ୍ରୋହୀ ହେବ ।

ଲେଙ୍କ—ହଉ ହଉ ଚାଲ । ହେଇଟି ଶିବୁ ଦାଦ ଏଣିକି ଆସୁଛନ୍ତି । (ଦୂରକୁ ଚାହିଁ) କଥାଟା ଶୁଣି ଯାଆନ୍ତୁ । ଆରେ ନେଦ ! ମୁଁ ଟିକିଏ ଆସେ—କଥାଟା ପଡ଼ୁ ପଡ଼ୁ ଚାଲିଆସିବ ଯେ—(ଚାଲିଗଲେ)

ପାଣୁ—ମୁଁ ତେବେ ଯାଉଛୁ କେନାଏ । ଘର ପୁଅ ଘରେ ରହିଲ କଥାବାର୍ତ୍ତାଟା ହେବାନିକ ?—(ଚାଲିଗଲା)

ହାଡ଼ୁ—କୁତ ବାପା ମୋତେ କେତେଥର କହିଛୁ, ହେଲେ ଜନପତ ସିନା ଜନ ସଭାରେ କଥାଟା ପକାଇଲେ ହୁଅନ୍ତା···

ବାପ୍ପା—ଦାଦାଙ୍କୁ କେତେଥର କହିବ କକା—ଶୁଣିଲେତ ?

ହାଡ୍ଡୁ—କାହିଁକ ପୁଅ ? ପିଲାଲୋକଥିଲୁ, ସେ ବୁଝୁଥିଲେ । ଏଣିକ ତୁ ବୁଝୁନୁ ?

ବାପ୍ପା—ନା, କକା, ସେ ବୁଝିବା ଭିତରେ ମୁଁ ହଜି ଯିବ । ମୁଁ କିନ୍ତୁ ହଜିବାକୁ ଚାହେଁନା—

ଶିବୁ—(ପାନ ଖାଇ ଖାଇ ପ୍ରବେଶ) ହଇରେ ହାଡ୍ଡୁ ! ରହିଲୁତ ? ମୁଁ ତ ଯେଇଠା କହୁଥିଲି—ଟେଂଠେଇଲା କାହିଁକ ?

ହାଡ୍ଡୁ—ନାଇଁ, ଏମାନେ ସମସ୍ତେ ବାଧ୍ୟ କଲେ ।

ଶିବୁ—ହଉ ଭଲହେଲା, ଭଲ ହେଲା, ମୁଁ ଯାଏ । ମାଛୁଆଳିଏ ଯାଇଥିଲେ । ମାଛ ଘର ଉଠିଛନ୍ତି । (ହସି ହସି ଚାଲିଗଲେ) ।

ହାଡ୍ଡୁ—ଦେଖିଲୁ ବାପ ଶିବୁ ଭାଇଙ୍କୁ ? ଜନ ଛଦର ଅବସ୍ଥା କ'ଣ—ଯ୍ୟାଙ୍କର···

ବାପ୍ପା—ତୁମର ସବୁ ଆଂଗୁଠି ଗୁଡ଼ା କ'ଣ ସମାନ କକା ? ସବୁ ଗୁଡ଼ିକର ପୁଣି ଦରକାରରେ ଆସେ, ଆସ ଯିବା—(ଯାଉ ଯାଉ)

## ତୃତୀୟ ଦୃଶ୍ୟ—

[ବାଇଧର ଘର । ଯବନିକା ଉତ୍ତୋଳିତ ହେଲ । ଗବାକ୍ଷ ଭେଦ କରି ଆସୁଥିବା ବିମଳ ଜ୍ୟୋତ୍ସ୍ନାରେ ଗୃହର ଅନ୍ତରଂଗ ସ୍ପଷ୍ଟ । କାନ୍ଥେମାର ଚିତ୍ର, ପଦ୍ମ, ଅଲଂକୃତ ଧାନ୍ୟ ମେଣ୍ଟା । ଦୂରରେ କଳା ସ୍ତୁରିତ ଖୁଣ୍ଟାରେ ପ୍ରଜ୍ୱଳିତ ପ୍ରଦୀପ । ଶିଖା ତାର ଶାନ୍ତ । ବଙ୍କଗ୍ରୀବା ମୟୂରର ପଲଂକ । ମୟୂରର କଂଠ ଓ ପୁଚ୍ଛକୁ ତ୍ରିକୋଣାକାରରେ ମଣାସ୍ତି ଅଲଂକୃତ । ପଲଂକରେ ରଙ୍ଗୀନ ଗୋଲକାର ଉପାଧାନ । ଉପରେ ରୁପା ଖଚିତ ବଟୁଆ । ପଲଂକର ଗୋଡତଳେ ପିତଳର ପିକଦାନୀ । ମୁଣ୍ଡ

ଉପରେ ପିତଳର ପାନବଟା । ଅନ୍ୟ ମନସ୍କ, ପୌରୁଷ ଦୀପ୍ତ । କୁଞ୍ଚିତ କପାଳ—ବାସ୍ନାର ଚକ୍ଷୁ ତାରକା ସ୍ଥିର । ଗୋଟା ଚକ୍ ଚକ୍ ଦୀର୍ଘ ବପୁ, ସ୍ୱଳ୍ପ ସ୍ମଶ୍ରୁ—ବାବୁରବାଲ...

ପ୍ରବେଶ କରେ ସାରଥୀ । ଦୀପାନ୍ୱିତା ନାରୀ । ବାଇଧର ଧର୍ମପତ୍ନୀ । ବସନ୍ତ ତାର ଯୌବନକୁ ସ୍ପର୍ଶ କଲଣି । ତଥାପି ତାର ପ୍ରସ୍ଫୁଟନୋନ୍ମୁଖୀ ଅବସ୍ଥା ରହିଛି । ତାର ଗତିସ୍ଥିତି, ବେଶବିନ୍ୟାସ ପ୍ରତିଟିରେ ଲାଗି ରହିଛି କଳାର ମାଦକତା—ହ୍ୱିକିଙ୍କ ବେହରଣ ଖୋଷାରେ ତର ଫୁଲର ମହକ...ଅଢ଼ଆଣୀର କ ଅଙ୍ଗନ୍ୟାସ ! ମନରେ ତାର ଆଶା ... ପ୍ରାଣରେ ଅଭିମାନର ଲୁଚକାଳି...ଆଖିରେ ତାର ଆଖିଏ ସ୍ୱପ୍ନ...ଦୀପକୁ ନିର୍ବାପିତ କରି ଆସେ । କେତେ ପ୍ରତୀକ୍ଷା ତାର ବ୍ୟର୍ଥ ହୋଇଛି । ବ୍ୟର୍ଥତାକୁ ସଫଳ କରିବାର ପ୍ରୟାସ କରିଛି ନାରୀ । ଏକମାତ୍ର କାମନା ତା'ର ଯୌବନ କଳିକା ବିକସିତ ହୋଇ ବିତରଣ କରୁ ନାରୀତ୍ୱର ସୌରଭ । ଛପି ଛପି ମନ୍ଦିର ଗଣ୍ଡରେ ଆସିଛି ବାସ୍ନାପାଖକୁ ସ୍ୱର୍ଗରେ ସୃଷ୍ଟି କରିବାକୁ ଚେଷ୍ଟା କରିଛି ଆଲୋଡ଼ନ...ଅଧରରେ ତାର ଅଭିମାନ

ନାହିଁ । ରହନ୍ତୁ ଏକ ହାସ୍ୟ ରେଖା—
ପଲ୍‌ଙ୍କରେ ବାପ୍ନା । ଏକତାର ଧରନ୍ତୁ
ସାଉଆ···ଗାଇନ୍ତୁ···]

ଚନ୍ଦ୍ରିକା ଦୋହଲାଇ, ଅଳସି ସପନ ନେଇ
ମଧୁବ୍ରତ ଆସ ନଇଁ, ଅଭୁଲା ପରଶ ଦେଇ (୦)

ଚନ୍ଦ୍ରମା ହଜିଯାଅ
ଦୂର ବାତାୟନେ
ବିରହୀ ଚକୋର ଝୁରେ
ଅନଳ ଦହନେ,
ଦୀପ ଶିଖା ଯାଅ ଲିଭି ଅଂଧାର ଛୁଇଁ ॥ ୧ ॥

ଯୁଗ ଯୁଗ ଧରି ମୁଁ ଯେ,
ସାଥୀ ତୁମ ପାଇଁ
ଅଳିଭ ସଳିତା ହେଲି
ନିଜରେ ଜଳାଇ
ନିଶୀଥରେ ଥରେ ମୋତେ,
ଦିଅ ମଉଳାଇ ॥ ୨ ॥

ସର—କଣ ଭଲ ଲାଗିଲାନି ? କେତେଥର କହିତ ସଂଗୀତ ହିଁ ଜୀବନ···ଅଥଚ···

ବାପ୍ନା—ସେ ସଂଗୀତ କଣ ତୁମେ ଶୁଣିପାରୁନ୍ତ ସର ! କାଠଯୋଡ଼ିର ଜଳତରଙ୍ଗ କାନେ କାନେ କହୁଛି···

ସର—(ଅଧର ତାର ଥର ଜଟିଲ) ସବୁ ଭୁଲ ମୋର । ସତରେ କହଲ, ମୋ' ତପସ୍ୟାର କଣ ଶେଷ ନାହିଁ ? ମୋ ଦେଖିବାରେ ଶାଶୁ ଦୁଇଥର ମାଣ ବସାଇଛନ୍ତି । କୁଳ ବୋହୂ ହୋଇ କେବଳ ପ୍ରଣତ ହଣାଇଛି । ସେ ଗୁଳି-ପିବାଠାରୁ ଲକ୍ଷ୍ମୀପୂଜା . କର, ମାଣ ମେଣ୍ଟା ମୁଁ ଏଇଠି ଝୁଲେଇଦେଇଚ । ଗୋଟି ଗୋଟି ହେଇ ଦଣଟି ହେଲଣି ।

ବାଇଧର—ବୁଝିଲ, ହେଲେ ତୁମେତ ମୋତେ ବୁଝିବାକୁ ଚେଷ୍ଟା କଲନ ? ମୋ କଥାକୁ ତୁମେ···

ସର—ମୁଁ ? ହଁ, ମନରେ ରଖି ରଖି ପାରୁନ । ତୁମେ କ'ଣ ମୋତେ···(କାନ୍ଦପକାଇଣ, ଏଇ ଅବସରରେ ବାପ୍ପା ଉଠି ଯାଇଛି । ସାହୁଆ ଦେଖେ ବାପ୍ପା ଯାଇ ଝରକା ପାଖେ—ପୁଣି ଯାଏ,) କଣ ଦେଖୁଛ ଯେ ? ହଜ ଆସ··· କଣା ସାଇଁ ସାଇଁ ଗର୍ଜିଲଣି ।

ବାଇଧର—ନାଁ, କାଦ ଲଗୁବ···

ସର—ତୁମ ଭାବନାର କ'ଣ ଶେଷ ନାହିଁ ?

ବାଇଧର—ଆରମ୍ଭ ଯାହାର ନାହିଁ ତାର ଶେଷ କାହିଁ ?

ସର—ତୁମେ ଏମିତ ଭାବ ବସିଲେ କ'ଣ ସବୁଠାର ସମାଧାନ ହୋଇଯିବ ?

ବାଇଧର—କାମଟା ହେଉନା ବା ହେଉନା ଯେତେବେଳେ ଭାବନାରେ ରୂପରେଖ ଦେଲେ ଦୋଷ କେଉଁଠି ରହିଲା?

ସର—ହାହିଁ—କେଇ ଘର ପାଂଚ ସାଲ ହେଲାଚ ଭାବୁଚ··· ସେଥିରେ ଘରରୁ ଟିକଏ ନାହିଁ । ଭବିଷ୍ୟତ ପାଇଁ···

ବାଇଧର—ତୁମେ ଜାଣି ପାରୁନ । ଭାବନା ଏକ ମୁଖୀ ନହେଲେ·

ସର—(ସ୍ମିତ ହାସ୍ୟରେ) ନାଦ ହୋଇଯିବ ? ଏଇଆନା ।

ବାଇଧର—ଠିକ୍ ସେଇଆ ନହେଲେ ବି ସେଇ କଥା । ଭାବନା ଏକମୁଖୀ ନହେଲେ ସାଧନା ସାଧକଠାରୁ ଦୂରେଇ ଯିବ ।

ସର—ହଉ, ଥାଉ ସେତକ । ଆଉ···ଟିକଏ କଉଡ଼ି ଖେଳିବା ମ—

ବାଇଧର—ନା···

ଧର—ଆଜ କ'ଣ ଏଇଠି ଠିଆ ହୋଇଥିବ ? (ସ୍ୱାମୀ ଅବସ୍ଥା ଦେଖି) ଆଚ୍ଛା, ଏ ସାଲେ, ସାରଙ୍ଗଧରପୁରରେ ଫସଲ କେମିତ ହୋଇଛି ? (ବାପ୍ୟାର ନୀରବତା ଦେଖି)— ଆମ ଗାଁ ମାଣିଆ ବନ୍ଧା ଚକଡା ଆଜ ଚଡ଼ାରେ ଫସଲ ଭଲ ହୋଇଛି ବୋଲି ଲୋକ କହୁଥିଲେ···।

ବାଇଧର—ହଁ ଫସଲ ହେଇଚି । ମାଟିରେ ସୁନା, ଗଛରେ ହୀରା ଫଳିଛି । ହେଲେ କ'ଣ ହେବ ? ଆମେ ତୋଳିବା ଆଗରୁ ଯଦ୍ଦା ଆଉ କିଏ ଲୁଟି ନିଏ ?

ସର—ଆଜ କଏ ଜୁର୍ ନବ ?

ବାଇଧର—ଏ ପବନ ଡୁଆର୍ରୁ କିଛୁ ଜାଣୁନ ? ବଡ ପାଣି କହୁଚ ଧୋଇ ନେବ,—ବାଆ କହୁଚ ଏ ପେଣ୍କୁ ନିର୍ମୂଳ କରିଦେବ ।

ସର—ହଜ ପେଣ୍ କଥା ପେଣ୍ରେ ଘରିବ । ଟିକଏ ଖୋଲ ପଡ଼··· (ଅନାଚ୍ଛ ରେ ବାଇଧର ଆସି ଶୋଇଛୁ······ସାରିଆ, ଗବାକ୍ଷରେ କୁଂଶଚ ତରସ୍କରଣୀକୁ ପ୍ରସାରିଚ କରିଛୁ । ଫେରି ଆସିଚ ବାପ୍ଣା ପାଖକୁ···) ଦୀପ ଲଭେଇ ଦେବି?

ବାଇଧର—ନାଁ···

ସର—··ନାଁ···କାହିଁକି । କାହିଁକି ତୁମେ ମତେ କିଛୁ କହୁନ କହିଲ ? ମୁଁ ତୁମର କଣ ଦୋଷ କରିଚ ? ତୁମ ସୁଖ ଶାନ୍ତିରେ ସିନା ମୋ ସୁଖଶାନ୍ତି···ତୁମ ଆନନ୍ଦରେ ସିନା ମୋ ଆନନ୍ଦ ।

ବାପ୍ଣା—(ଗୃହିଁ ଉଠି) ସର ! ଆଖିରେ ତୁମର ଏତେ ସ୍ୱପ୍ନ—ଗଣ୍ଡରେ ଏତେ ମାଦକତା ! ତୁମେଇଚ ସୃଷ୍ଟି ବଶେଷ । ତୁମେ କଣ ମୋର ବାସନା କଳିକାକୁ ପୂର୍ଣ୍ଣତା ଦେଇ ପାରିବନି ସର ? ଚନ୍ତା କଣ ମୋର ରୂପରେଖ ନେବନି?

ସର—ଏ କ'ଣ କହୁଛ ? ସାରିଆ କ'ଣ ତୁମର ସହଧର୍ମଣୀ ନୁହେଁ ? ତୁମ କାମରେ ଯଦ ମୁଁ ଆଗେଇ ନଗଲି, ତୁମ ଜୀବନରେ ଯଦ ଶାନ୍ତି ଆଣି ପାରିଲିନି, ଏ ଜୀବନର ମୂଲ୍ୟ କଣ ଅଛି

କହିଲ ? ସେଇ ବଂଧ ଯଦି ତୁମର ସ୍ୱପ୍ନ, ସତରେ ତା'
ଲଗି ଯଦି ତୁମେ ପାଗଳ, ତେବେ ମୋର ଆଜ କେଉଁଥିରୁ
କ'ଣ ମିଳିବ ? ସେଇ ସ୍ୱପ୍ନ, ସେଇ କାମରେ ମୁଁ ପାଗଳୀ
ହୁଏ...ସେଥିରେ ମୁଁ ଆନନ୍ଦ ପାଇବି, ତୃପ୍ତି ପାଇବି, ଶାନ୍ତି
ସନ୍ଧ୍ୱ ପାଇବିନା ତୁମର ଅନ୍ୟ ମନସ୍କତା...

ବାପ୍ପା —ସ୍ୱ...ର.. !

(ସାବିଆ କୋଳରେ ମୁହଁ ଗୁଂଜିଚ)

## ଚତୁର୍ଥ ଦୃଶ୍ୟ

[ ବଡ଼ାନାସୀ ଗ୍ରାମର ଶେଷାଂଶ—ମୁହଁରେ ଲୁଗାଦେଇ ଲୋକର ସ୍ତ୍ରୀ, ସୁମୀ ପାଣି ପାଇଁ ଚଇତଇରେ ଯାଉ ଯାଉ ଲୋକ ସହିତ ଧକ୍କା ବାଜିବାରୁ—]

ସୁମୀ—କିଏମ ଅନ୍ଧାର କଣା ଭଳିଆ ।

ଲୋକ—କିଏ ଚଣ୍ଡିକେ—ନାଇଁ ନାଇଁ ଚନ୍ଦ୍, ମୁହାଁ ତୁମେ···

ସୁମୀ—କିଓ ତୁମେପରା ପଠାକୁ ଯାଇଥିଲ ?

ଲୋକ—ପଠାରେ କଣ ଅଛୁ ଯେ···ନଈ ବଢ଼ ଆଣୁଥିଲା ପାଣି···

ସୁମୀ—ନ ଦେଖିଲ ଲୋକ ଦେଖ, କଇଁକ କାଢ଼ୁଛୁ କେବେ···କିଓ ଆଠ ଦିନ ହେଲ ପାଣି ଛୁଡ଼ଗଲଣି ତୁମେ ମୋତେ ପଠାକୁ ଆସୁଛ କହିଦେଇ ବୁଲୁଛ ।

ଲେଙ୍କା—ଚଡ଼ାଲୁ.କହୁଥିବ ନାଁ ।।

ସୁମୀ—ହେଲା ଏବେ···କେଉଁଠି ତୁମେ କଣ କରୁଛ କହିଲ ? ଚଡ଼ାଚଢ଼ଡ଼ା କ'ଣ ମୁଁ ଦେଖିନି । ତୁମେ ଏମିତ ଯୋଲ ଫାଂକୁଆ ହେଲେ କାମ ହେବ କେମିତ ?

ଲେଙ୍କା—ମଣଗଲା···

ସୁମୀ—କଣ ?

ଲେଙ୍କା—ନାହିଁ କହୁ ନାହିଁ । ତୁମେ ଚନ୍ଦ୍ରମୁହିଁ—କାମକୁ ଲଗା ଦେଇ ପାରୁନ କାହିଁକ ତା ମରମ ତ ବୁଝିଲନି···କେତେ ଆଡ଼େ ଆଖି ବୁଲେଇବାକୁ ପଡ଼ୁଛୁ । ସେଦିନ ସେମିତ ହାଣ୍ଡୁ କକା ବୁଲିଯାଉଥିଲେ । ତବୁତ ସମ୍ଭାଳିବାକୁ ହେବ···।

ସୁମୀ—ସତରେ ଲେ ମାଁ । କକା ରହିଲେ କେମିତ, ଦାଦା ସାଆନ୍ତେ ଯେତେ କହିଲେ ଶୁଣିଲେନି ।

ଲେଙ୍କା—ଚନ୍ଦ୍ରମୁହିଁ ! ଶିବୁ ଦାଦା କ'ଣ ରହିଲା ଭଳିଆ କହୁଥିଲେ ଯେ ହାଣ୍ଡୁ କକା ଶୁଣନ୍ତେ—

ସୁମୀ—ତେବେ ସାଆନ୍ତେ କହିଲେ···

ଲେଙ୍କା—ସାଆନ୍ତେ, ସଆନ୍ତେ କିଏ ?

ସୁମୀ—ମଲ···ନଲାଣିଲ ବୁଢ଼ାଳ ଘାତ ଖାଉଛ···

ଲେଙ୍କ—ଓହୋ—ବାପୁାଗ୍ରଇ··· ନାଁ ନାଁ ନାଁ ନାଁ ·ବାପୁ'ଇ ଯାଞ୍ଚି ଫୁଟି ଯାଉଥିଲା ହେଲେ ସେଇ ନାଇଁ···କହିଦେଲି କଥା ଯଦେନା···

ସୁମୀ—ତୁମେଟି ? ଯେମିତି ବୁଝେଇଥିବନା !

ଲେଙ୍କ—ବୁଝେଇ ଥିବ କ'ଣ ? ବୁଝେଇଲି । କଓ ବୁଝେଇବାର ଗୋଟିଏ ଢଙ୍ଗ ଅଛି ନା, କହିଲେ ମଣିଷ ତ ମଣିଷ ପଶୁବି ଢଳି ପଡ଼ିବ । ବୁଝିଲେ ଟଣ୍ଡିକେ ! ନାଇଁ ନାଇଁ ଚନ୍ଦ୍ରମୁହାଁ ଯେମିତି ହାବଭାବ ଦେଖିଲେ କିଏ ନଶୁଣିବ ?

ସୁମୀ—ହଉ ଉଠ···ହାବଭାବ ପରେ ଦେଖେଇବ । ଯେଉଁବୁଦ୍ଧି ।

ଲେଙ୍କ—କ'ଣ କହିଲ ? ବୁଦ୍ଧି ? ଖାଲି ବଡାନାସୀ କାହିଁକି, ପଞ୍ଚ ଦଶଟା ଜନପଦରେ ଏମିତି ବୁଦ୍ଧି କାହାର ଅଛି କହିଲ ? ସବୁବେଳେ ବାପୁ ଖାଇଥା ଟୋକ ଭଲ ଲାଗିଛି । କହିଦେଲେ କରିବେ । ଉତ୍ତମ ପିଲାଟିଏ । ହେଲେ କ'ଣ ହେଲା ? ସବୁବେଳେତ ତା ପଛେ କଣ କରିବା— ଠିକମିତ ହେବ ?

ସୁମୀ—ଉଠମ—ବେଶତ ପଟେଇ ହେଉଛ···

ଲେଙ୍କ—ହଁ ··ଯାହାର ଯେଉଁ ଗୁଣନା । ଫୁଲ ଫୁଟିଲେ ତା ଗନ୍ଧକୁ କିଏ ବାନ୍ଧି ରଖେନା ତୁମେ ରଖିବ । ଏଇଲେ ପଷ ବାପୁାଭାଇ ସଙ୍ଗେ ଆଲୋଚନା ପରାମର୍ଶ କରୁଥିଲି । ସେ ପୁଣି ଆସିବେ ଯେ ।

ସୁମୀ—ସାଆନ୍ତେ ଆସିବେ । ଉଠ-ମୁଁ ପାଣିଠା ନେଇଚାଲିଯାଏ ।
(ଲୋକ ବାଟ ନ ଛାଡ଼ିବାରୁ) ମଣି ମୋ ହଟା···ଦାଣ୍ଡଠାରେ
(ଚାଲିଗଲା)

ଲୋକ—ଚନ୍ଦ୍ରମୁହିଁ···ହଉ ଘରକୁ ଆସ—ଫେଠଲ କାମ କଥା
ମୋତେ କହନା···(ସପନା ଦଉଡ଼ି ଦଉଡ଼ି ଆସିଛି)

ସପନା—ଲୋକା'ଇମ୍, ବାପୁ'ଇକୁ ଦେଖିଛ ?

ଲୋକ—କାହିଁକି ? ବୁଝିଲୁ ବାପ ସେତ ବାପୁ ତୁ ଅଧା ବାପୁ ।
ହେଇଟି ଆସୁଛନ୍ତି, ମୁ ଯାଉଛି ନହେଲେ ପୁଣି ବଡ଼ କାମ
କଥା ପଚେରିବେ ।

[ଲୋକ ଚାଲିଗଲା—ସାଙ୍ଗେ ସାଙ୍ଗେ ପହଞ୍ଚିଆସିଛନ୍ତି ବାପୁ
ସପନା ବାପୁଙ୍କୁ ଦେଖି]

ସପନା—ବାପୁ'ଇ ! ତୁମକୁ ଖୋଜି ଖୋଜି ଆମେ ଅସାସ୍ତମ
ହେଲୁଣି, ହଉ ଘରକୁ ଚାଲ···

ବାପୁ—ଯିବା, କୁଆଡ଼େ ଯିବା ? ଯୁଆଡ଼େ ଗଲେ କ'ଣ ସିଏ
ଛାଡ଼ିଦେବ ?

ସପନା—ତୁମର ଏ କଥାରୁ କିଏ କ'ଣ ବୁଝିବ କହିଲ ?

ବାପୁ—ବୁଝିବନି ? କେହି ନ ବୁଝିଲେ ବି ତୁ ବୁଝିଲୁନି ସପନା

ସପନା—(ହସି) କ'ଣ ତୁମେ କହୁଛ ?

ବାପ୍ପା—ମୁଁ ଠିକ୍ କହୁଛି । ଖାଲି ମୁଁ କ ଭୁ ·ନୁଠହିଁ—ସମସ୍ତେ
ଆଗୁଆ ହେଲେ ସିନା କାମଟା ହେବ···

ସପନା—ଏକଥା ସିନା ସମସ୍ତେ ବୁଝିଲେ··

ବାପ୍ପା—ମୁଁ କ'ଣ ବୁଝେଇବି ସପନା ? ଗ୍ମ କକାର ନାଗବଂଧ
ଚଲେ ଏବେ ବ ମୋ ଘୁଞ୍ଚ ଠିଆ ହୋଇଥିବ । ଶିବୁ
ଦାଦାଙ୍କ ଘା' ବହୁବାର ମୋ ଲୁହରେ ତ ଧୋଇ
ଦେଇଛି—ପାଣୁ ପଧାନଙ୍କୁ ନେହୁରା ହୋଇଛି ।
ପାତାଳକୁ କାକୁତି ମିନତି କରିଛି ସାହାଯ୍ୟ କରିବାକୁ ।
ନନ୍ଦ ଆଉ ପାଣ୍ଡି ପଲ୍ଲୀକି ଧାଁ ଦଉଡ଼ କରିଛି—ହେଲେ...

ସପନା—ସେମାନେ ତ କେହି ନହିଁ କରି ନାହାଁନ୍ତି ?

ବାପ୍ପା—ହିଁ କରି ଯଦି ଅଣ୍ଟା ଭିଡ଼ ନାହାଁନ୍ତି, ନୀରବ ରହି ଯଦି
ଆଗଭର ହୋଇ ନାହାଁନ୍ତି ତେବେ ସେ ମୌନତାରେ
ସମ୍ମତି ନାହିଁ ? ସେ ହଁ ରେ ପୁରୁଷପଣିଆ ନାହିଁ !

ସପନା—ଆଜ୍ଞା, ବାପ୍ପାଭାଇ । ଆଜି ଆଉଥରେ କଥାଟା ପକାଇଲେ
କ'ଣ ହୁଅନ୍ତାନି ?

ବାପ୍ପା—କ'ଣ କିଛି ଫଳ ହେବ ?

ସପନା—ବାଃ···ଫଳ ହେବନି ବୋଲି ହତାଶିଆ ହେଲେ କ'ଣ
କିଛି ହେବ ?

ବାପ୍ପା—ନା, ଗାଁ ସଭରେ ଯଦି ଶିବୁଦାଈ ଟିକେ ଜୋର
ଦିଅନ୍ତେ···

ସପନା—ତୁମେ ତ ତାଙ୍କ କଥା ଜାଣିଛ । ସେ ନ କହିଲେବି ତୁମେ କହନ୍ତୁନ—ତୁମେ ତ ଜନପତି ।

ବାପୁ—ଶିବୁ ଦାଦା ଥାଉ ଥାଉ ମୁଁ କହିବି ? ଏଇଟା କୋଉ ନ୍ୟାୟ ହେବ କହିଲୁ ?

ସପନା—ନ୍ୟାୟ ନ୍ୟାୟ କହି ତୁମେ ନ୍ୟାୟର ବାଟକୁ ବନ୍ଦ କରି ଦିଅନା ବାପୁ'ଇ । ଯୋଉସବୁରେ ତ ତୁମେ ଦେଇଥିଲ— ସେ ବୁଝିଥିଲେ—

ବାପୁ—ତୁ ବୁଝୁନୁ ସପନା । ତାଙ୍କୁ ଯେତେବେଳେ ବୁଝା ସୁଝା କରିବାକୁ କହୁଛୁ, ଆଉ ସେ ଭଲ ମନ୍ଦ ବୁଝି ଆସୁଛନ୍ତି, ଆଜ ଇଚ୍ଛା ପୂରଣ ପାଇଁ କ୍ଷମତା ପ୍ରୟୋଗ କରିବା···

ସପନା—ଆଶ୍ଚର୍ଯ୍ୟ କଥା ଯେ' ବାପୁବାଇ ! ଏଥିରେ କ୍ଷମତା ପ୍ରୟୋଗ ହେଲା କେଉଁଠି ? ସ୍ୱା ଦ୍ୱାରା ତ ତୁମର କାହାଣେ କ ପଣେ ବଡ଼ତ ହେଉନା । ସମସ୍ତଂକର ଭଲ ହେବ··

ବାପୁ—ନାଁ,

ସପନା—ତେବେ କଥାଟା ରଜାଙ୍କ କାନକୁ ନେଲେ କ୍ଷତି କ'ଣ ?

ବାପୁ—କ୍ଷତି ନାହିଁ ସତ; ତେବେ ଲାଭ କ'ଣ ?

ସପନା—କାହିଁକି ? ଗଜଶକ୍ତି···

ବାପୁ—(ହସି) ରାଜଶକ୍ତିର ଅସ୍ତିତ୍ୱ ମୁଁ ଅସ୍ୱୀକାର କରିନା କି କରୁନା ସପନା । ଜନଶକ୍ତି ହିଁ ରାଜଶକ୍ତିରେ ପ୍ରାଣପ୍ରାଚୁର୍ଯ୍ୟ

ପ୍ରତିଷ୍ଠା କରେ । ତା' ପୁଣି ଫେରିଆସେ ଲୋକ ମଣ୍ଡଳକୁ ।
ମେଘର ବଳୟ ଦେଖିନୁ ? ଠିକ୍ ସେଇମିତ ।

ସପନା—ତେବେ ଗୋଟାଏ କାମ କରିବା । ଆଜି ତ ସନ୍ଧ୍ୟା ଅଛୁ । କଥାଟା ପକେଇବା, ମୋର ମନେ ହେଉଛି ସମସ୍ତେ ବଙ୍କ ହେବେ । ତା'ପରେ ରାଜାଙ୍କୁ ଜଣେଇବା ।

ବାୟୁ—ଏ କାମଟା ଯେମିତ ମୋ' ସ୍ୱପ୍ନରେ ରହିଗଲା ଭଳି ସେମିତ ତୋ ରାଜାଙ୍କୁ ଜଣାଇବା କଥା ରହିଯିବନି ତ ?

ସପନା—କାହିଁକି ?

ବାୟୁ—କେତେ ଦୂରରେ ସେ—କେତେ ଦୂରରେ ଆମେ । କାହିଁ ଦଶାଶ୍ୱମେଧ ଘାଟ—କାହିଁ ବଡ଼ ନାଥ...

ସପନା—ସତଯେ—ତେବେ କ'ଣ ଗୋଟାଏ କରୁଛ କରିବାନି ?

[ଦୂରରୁ ଯୋଡ଼ ନାଗରା ଶୁଭୁଛି ତୁହେଁ ନୀରବ । "ମହା-ରାଜାଧିରାଜ, ତ୍ରିକଳିଂଗାଧିପତି, ପରମ ମହେଶ୍ୱର ପରମ ଭଟ୍ଟାରକ, ସୋମବ୍ରାହ୍ମଣବଂଶାୟୁ, କେଶରୀ-କୁଳଚନ୍ଦ୍ର, ବଡ଼ାନାସୀ ପରମ ବୈଷ୍ଣବ ଏଣିକେ ଶରବେ । ଜ୍ଞାନପତିଙ୍କ ଆଜ୍ଞା—ବାଟଘାଟରେ ମହାରାଜ ଅଭିନନ୍ଦିତ ହେବେ"]

ଶୁଣିଲ ବାୟୁଭାଇ ! ଏ ଜ୍ଞାନପତିର କଥା ନୁହେଁ । ଏ ଈଶ୍ୱରଙ୍କ ଆଦେଶ...ମୁଁ ଯାଉଛି ବାୟୁଇ', ପଲ୍ଲୀ ପୁର ଜନପଦ ସବୁଠି ଖବର ଦେବ । ସମସ୍ତଙ୍କୁ ସଜାଗ କରିବ ।

ନୂଆଁ ବୋଉଙ୍କୁ କହିବ, ତାଙ୍କ ତପସ୍ୟାର ଫଳ ଆଗରେ···
(ପଳାଇ ଯାଉ ଥାଉ)

ବାପୁ—ସପନା, ସପନା—ଯିବ, ମହାରାଜାଙ୍କ ପାଖକୁ ସେମିତ
ଯିବ ଖାଲି ଖାଲି ?

[ବାପୁର ସ୍ତ୍ରୀ ଘର ଆସିଛୁ । ହାତରେ ତାର ବନ୍ଦାଣ ଥାଳି,
ଥାଳିରେ ନଡ଼ିଆ, ଫୁଲ, ପାନ, ଦୀର୍ଘ ଦୀପ]

ସର—ସପନା ! ସବୁ ଶୁଣିଲେଣି । କିଛି ନ ହେଲେ ସବୁ ପାପ-
ପୁଣ୍ୟର ଭାଗନେବାକୁ ମୁଁ ତ ଅଛି । ଜନପଦରେ ପ୍ରଥମ
ନାରୀର ଗୌରବ ଯାହାଲାଗି ମୁଁ ପାଇଛି, ତାଙ୍କର
କାମନାପାଖୁଡ଼ା ମେଲିଦେବାରେ ମୁଁ ପଛେଇବ କାହିଁକି?
(ବାପୁ ପାଖକୁ ଆସି) ମହାରାଜାଙ୍କୁ ଆଜି ସ୍ୱାଗତ
କଲିବେଳେ ସବୁ ଜଣାଇବ । ତୁମେ—ତୁମେ ମନା
କରନି । କ୍ଷମତାକୁ ଗୁହଁ ତୁମେ ଅମାପ କ୍ଷମତାର
ଅଧିକାରୀ । ଜନପଦର ନ ହେଲେ ବି ତୁମେ ତ ମୋ
ଜୀବନର ଜାନପତ (ପ୍ରଣାମ କଲିବେଳେ)

ସପନା—ନୂଆବୋଉ, ଏ ଗୀତରେ ତୁମ ଅନ୍ୟମନସ୍କତା କଷ୍ଟି ପୂତା
ନୁହେଁ, ଉନ୍ନତ ସଂଚୟର ସୂଚନା । ତୁମେଇତ ଆଦ୍ୟାଶକ୍ତି-
ଜନନୀ !

## ପଞ୍ଚମ ଦୃଶ୍ୟ

[ଶିବିର । ରଂଗୀନ ଶିଲ୍କ୍ ପରଦାର ଅଗ୍ରଭାଗରେ ଶିବ ମୂର୍ତ୍ତି ଅଙ୍କିତ । ପାର୍ଶ୍ୱରେ ଗୃମର ଆଲ୍‌ଟ ପଡ଼ୁଛି । ନର୍ତ୍ତକୀର ଅଲକ୍ତକ ରଂଜିତ ନଗ୍ନ ପାଦର ଚଳ ଚଂଚଳଗତି ଦର୍ଶକ ଚକ୍ଷୁରେ କୋଟିଏ ଇଂଦ୍ରଧନୁର ବର୍ଣ୍ଣଙ୍ଗାର ସୃଷ୍ଟି କରେ । ନୂପୁରର ଶିଂଜନୀ ତାଳେ ତାଳେ ଢୋଳେ କାମନାର ବିନମ୍ର ନିବେଦନ । ରାଜା ସିଂହାସନରେ ଉପବିଷ୍ଟ । ଚତୁର୍ଦ୍ଦିଗ ପୁଷ୍ପମୟ । ଗୃମର ଧରିଛି ଜଣେ ନାରୀ । ଏକତାର, ମନ୍ଦିରା ପ୍ରଭୃତି ବିଭିନ୍ନ ବାଦ୍ୟ ଧରିଥାନ୍ତି ଗ୍ରାମର କେତେକ ଝିଅ । ସିଂହାସନ ପାର୍ଶ୍ୱରେ କବି । ତେଜୋଦୀପ୍ତ

ବ୍ରାହ୍ମଣ, ସ୍କଂଧରେ ଉପବୀତ, ଧବଳ ଉତ୍ତରୀୟ । ନୃତ୍ୟ ଶେଷକୁ ଭିତରୁ ପାଟି ହେଲା । "ଆଃ···ମୋତେ ଛାଡ଼···ମୋତେ ଛାଡ଼ ମୁଁ ଭିକ୍ଷା କରିବ···ମହାରାଜ ।" କବି ଚାଲିଗଲେ]

ରାଜା—ସୁନ୍ଦର···ସୁନ୍ଦର ତୁମର ନୃତ୍ୟ ବିଳାସ । ବନ୍ଦନୀୟା··· ବନ୍ଦନୀୟା ତୁମେ କଳାର ପୂଜାରିଣୀ···(ନୃତ୍ୟରତା ଗ୍ରାମ୍ୟ ଯୁବତୀମାନେ ଚାଲିଗଲେ, କବି ପ୍ରବେଶ କଲେ)

କବି—(ବାପ୍ପାଙ୍କୁ ଲକ୍ଷ୍ୟ କରି) ଆସ··· (ଯାଇ ତାଙ୍କ ଉଦ୍ଦିଷ୍ଟ ଆସନରେ ବସିଲେ ।)

ବାପ୍ପା—ମହାରାଜା ! ନିବେଦନ ଲାଗି ଅନୁମତି ପ୍ରାର୍ଥନା କରେ— (ବାପ୍ପା ବନ୍ଦନା କଲା)

ରାଜା—ଆବଶ୍ୟକତା କେଉଁଠି ଯୁବକ ? ବରଂ ମୋର କର୍ତ୍ତବ୍ୟ···

ବାପ୍ପା—ଶ୍ରୀମଂକର ଦ୍ୱାର ତେବେ ସାଧାରଣଙ୍କ ଲାଗି ଉନ୍ମୁକ୍ତ ମହାରାଜ ?

ରାଜା—ଉନ୍ମୁକ୍ତ ? ରାଜା ପ୍ରଜାର ଘନିଷ୍ଠ ସଂପର୍କ ଭିତରେ ଏ ପ୍ରଶ୍ନ ଉଠିପାରେନା, ସେବାହିଁ ସେବକ । ତୁମେ କେଉଁ ଅଂଚଳର ଜନପଦ ଜାଣିଲେ···

ବାପୁ—ଜନ୍ମସୂତ୍ରରୁ ପ୍ରଭୁ ! ଜଣେ ସାଧାରଣ ପ୍ରଜା ପାଇକ ।

ରାଜା—ଆହୁରି ଆନନ୍ଦର କଥା । ନିଃସଂକୋଚରେ ପ୍ରକାଶ କର ।

ବାପୁ—ମହାରାଜ ! ସରହଦ ଅନୁପାତରେ, ଏ ଅଂଚଳର ରାଜାଂଙ୍କର ରାଜକୋଷକୁ ପ୍ରାପ୍ୟ ଅନ୍ୟ ଅଂଚଳ ତୁଳନାରେ ଚାରିଗୁଣା ଯାଏ । ବୋଇତରୁ ପଣି, ପାଣିଦ୍ରବ୍ୟ ସଂଗୃହୀତ ହୁଏ । ପ୍ରଭୁ ! ଏ ସେଣୁ ଯେପରି ଜଳ ଥଳ ଉଭୟ ଆଡ଼ୁ ସଂଯୋଜିତ ସେଥିରେ ଅବହେଳିତ ରହିବା···

ରାଜା—ଅବହେଳିତ !

ବାପୁ— ମହିମା ! ମୋ' ପିଲାଦିନେ କାଠଯୋଡ଼ି ଯେପରି ଥିଲା ଆଜି ତା ନାହିଁ । ପ୍ରତିବର୍ଷ କୂଳ ଲଂଘି ପାଣି ଫସଲ ଉଜାଡ଼ି ନେଉଛି । ଅତଡ଼ା ଖସାଇ ବଡ଼ାନାସୀକୁ ବାଉଳା କରୁଛି । (ରାଜାଙ୍କ ନୀରବତା ଦେଖି) ପ୍ରଭୁ ! ବେଗ ବ୍ୟାଧି ପରି ଏହାର ନିଦାନ କରାନଗଲେ ମହାନଦୀ କାଠଯୋଡ଼ିର ବାଲି ଶେଯ ଏକାକାର ହୋଇଯିବ ପ୍ରଭୁ·

ଜବ—ଉଦ୍ଦେଶ୍ୟ ?

ବାପୁ—କିଛି ନୁହେଁ ମହିମା ! ଜନପଦର ନିରାପଦ ଲାଗି ଯଦି ଚାରି ପାଞ୍ଚ ହାତ ପଥର ବନ୍ଧର ଆଦେଶ ଦିଆ ଯାଆନ୍ତା···

ରାଜା—ପଥର ବନ୍ଧ ! ଏହା କେତେଦୂର ବିଜ୍ଞାନ ସମ୍ମତ । ହେଲେ ବି ମନେହୁଏ ରାଜକୋଷ ପକ୍ଷରେ ସଂଭବ ନହୋଇ ପାରେ···

ବାପ୍ପା—ମଣିମା !

ରାଜା—କବି ଜଳଧାରଙ୍କୁ ଅନ୍ୟ ଥର ମୁଖୀ କଲେ ପେଣୁଛୁ ଅନ୍ତତଃ···

ବାପ୍ପା—ମାର୍ଜନା ଚାହେଁ ପ୍ରଭୁଁ , ପ୍ରଭୁ ! ଗଣନା କରି ଦେଖିଛୁ ବାଲି କାଠି ସୁଆ ମୁହଁ ଚାଲ୍ପବର୍ଜ୍ଜନ ଅପେକ୍ଷା ପଥରବନ୍ଧାଣର ଯଥେଷ୍ଟ କମ୍ ହେବ । ଏହା ଛଡ଼ା ନାଆ ଛଆଣିରେ ସୁଦକ୍ଷ ପରିବାର ଜନ୍ମ ମାଟି ଗୁଡ଼ିବାର ଦୁଃଖ ଭୋଗ କରିବେନି । ପ୍ରଭୁଁ ! ତୋଫଠା ପରି ଅନାହାର୍ଣ୍ଣ ନଷ୍ଟ ହେବନି ।

ରାଜା— ଆକସ୍ମିକ ଭାବେ ଏଭଳି ବସ୍ତୁର ଅପେକ୍ଷା ଦରବାରରେ ଏହାର ଆଲୋଚନା କଲେ···

କବି— ପ୍ରଭୁ ଯଦି ଏହାର ଗୁରୁତ୍ୱ ଉପଲବ୍ଧି କରୁଛନ୍ତି ତେବେ ନୀତି ଦୃଷ୍ଟିରୁ ଗ୍ରହଣ କରି ତାହା ଘୋଷଣା କରିଦେବାକୁ ଯେ କେବଳ ପରାମର୍ଶ ଦେବେ । ଅବଶ୍ୟ ଗ୍ରହଣର ବିବେଚନା ଆପଣଙ୍କର । (ରାଜା ହର୍ଷ ଉଠଲେ)

ବାପ୍ପା – ମହାରାଜ ! ଓ ଦୁଇବର୍ଷ ବଢ଼ିଲଗି ଲୋକଙ୍କର ଆର୍ଥିକ ଅବସ୍ଥା ଭଲ ନୁହେଁ । ଏତକ ବେଳେ ଏକାମ କରାଗଲେ ଲୋକଙ୍କର ଆର୍ଥିକ ଅବସ୍ଥା ଉନ୍ନତ ହୁଅନ୍ତା । (ମହାରାଜାଙ୍କ ନୀରବତା ଦେଖି ବାପ୍ପା ନସ୍ତ) ପ୍ରଭୁଁ— ପ୍ରଭୁଁଙ୍କ ବଂଶର ଅମଳାନ କୀର୍ତ୍ତି ଲୋକ ମୁଖରେ ଶୋଭିତ । ସେଇ ବଂଶର କୀର୍ତ୍ତିଶାଳୀ ଶାସକ ପ୍ରଭୁଁ···ହଜାର ହଜାର

ଜନତା ସନ୍ତୁଷ୍ଟ ନୟନରେ ଶ୍ରୀମୁଖ ବଚନକୁ ଅପେକ୍ଷା କରି ରହିଛନ୍ତି । ପ୍ରଭୁ !

ରାଜା—(ଗଂଭୀର ଭାବେ) ତୁମର ଯୁକ୍ତି ଗଭୀର ଚିନ୍ତା ସମ୍ମତ ସୂଚକ । ତଥାପି ପରିଷଦ ବର୍ଗଙ୍କ ସହ ପରାମର୍ଶ ନକରି ସମ୍ମତ ଦେବା ଉଚିତ ହେବନାହିଁ । (ରାଜାଙ୍କର ଏ ପ୍ରକାର ଘୋଷଣାରେ ବାୟୁାର ଭୟାକୁଳ ଅବସ୍ଥା ବଢ଼ି ଉଠିଲା । ରାଜଦଣ୍ଡର ଭୟ ନୁହେଁ; ଅଂଚଳର ଅବସ୍ଥା ଚିନ୍ତାକରି···)

ବାୟୁ—ଫେରିଯିବ ପ୍ରଭୁ ? (କହିବାରେ, ଗୃହିଁବାରେ, ଯିବାରେ, ପ୍ରାଣନାହିଁ ଟିକ୍ ବାହାରି ଆସିବା ବେଳେ—)

କବ—ଅପେକ୍ଷା କର ! (ବାୟୁାକୁ)···(ବାୟୁ ବାହାରି ଯାଇ ଅପେକ୍ଷା କରେ) ପରମ ମାହେଶ୍ୱର ମହାରାଜ ! ଜନପଦର ଅନୁରୋଧ ଆପଣଙ୍କ ଅନ୍ତରକୁ ଆସିଥା'ନ୍ତା ବୋଧହୁଏ । କହିପାରିବେ ପ୍ରଭୁ ! ସତ୍ୟର ଆସନରେ ଯେ ଆସୀନ ତାର ମର୍ଯ୍ୟାଦା କ'ଣ ମାଟିର ଆସନ ଦେବନି ? ଆସନକ୍ଷମତା କ'ଣ ଚିରଦିନ ଅନୁଗ୍ରହ ଲାଭ କରି ଆସୁଥିବ ?

ରାଜା—ଅସ୍ପଷ୍ଟ ହେଲ କବ !

କବ—ଗ୍ରାହ୍ୟିକା ଗ୍ରହଣ ନକଲେ ସବୁହିଁତ ଅସ୍ପଷ୍ଟ ରହିଯିବ ମହାରାଜ !

ରାଜା — କବି ! ଏହିପରି ସବୁକ୍ଷେତ୍ରରେ ସର୍ବ ସାଧାରଣଙ୍କ କଥାକୁ ଗ୍ରହଣ କରିନେଲେ···

କବି—ଆଜି ନହେଲେ ବି' ଚିରଦିନ ସାଧାରଣଙ୍କ ଅନୁରୋଧକୁ ସିଂହାସନ ଉପେକ୍ଷା କରିପାରିବନି ପ୍ରଭୁ ।

ରାଜା — ଅନୁରୋଧକୁ ସିଂହାସନ ଉପେକ୍ଷା କରିଛି ?

କବି — ପ୍ରଭୁ ! ମାର୍ଜନା କରିବେ ! ସ୍ୱଜ୍ଞାନାସ୍ତୀ ବାଇଧରର ଅନୁରୋଧକୁ ଆପଣ ଉପେକ୍ଷା ନକଲେ ମଧ୍ୟ ଗ୍ରହଣ କରି ନାହାଁନ୍ତି ? ବର୍ବରର ପ୍ରହସନ ଭିତରେ, ପରାମର୍ଶର ଆଲୋଡ଼ନ ଭିତରେ ଏହାର ହୁଏତ ସମାଧି ଘଟିପାରେ । କିନ୍ତୁ ଏକାର୍ଥ ଗ୍ରହଣ ନକଲେ ଶାସନରେ କଳଙ୍କ ରହି-ଯିବ ମହାରାଜ !

ରାଜା — କବି ! ବ୍ୟକ୍ତିଗତ ଜୀବନର ବନ୍ଧୁ ହୋଇ ତୁମେ ମୋତେ ବୁଝିବାକୁ ଚେଷ୍ଟା କରିନ ? ପରାମର୍ଶ ନକଲେ ଏହି ଲୋକଶକ୍ତି କାଲି ବିଘୋଷିତ କରିବ ରାଜା ସ୍ୱେଚ୍ଛାଗ୍ରସ୍ତ··· ସ୍ୱୀକାର କରୁଛି ପରାମର୍ଶକାଳୀନ-ପ୍ରହସନ ମଧ୍ୟ ମିଥ୍ୟା ନୁହେଁ···

କବି—ଆତ୍ମପକ୍ଷ ସମର୍ଥନ ଲାଗି ପ୍ରଭୁଙ୍କର ଏ ଅଭିଳାଷ ସମ୍ପର୍କରେ ମୋର କିଛି କହିବାର ନାହିଁ । ତଥାପି ବ୍ୟକ୍ତିତ୍ୱରେ କୌଣସି କୃତ୍ରିମ ଚିହ୍ନ ସୃଷ୍ଟି ହେବା ପୂର୍ବରୁ ମୋର ଏତିକି ଅନୁରୋଧ, ବସ୍ତୁତଃ ପ୍ରଭୁ ପକ୍ଷ ପରାମର୍ଶ ଗ୍ରହନ୍ତୁ ତେବେ

ଏ ଅଂଚଳରେ ଜ୍ଞାନପଣ୍ଡମାନଙ୍କ ସହିତ ପରାମର୍ଶ କରି ପାରନ୍ତି ।

ରାଜା—ବେଶ୍ ··

କବି—ବାଇଧର ! ରାଜାଙ୍କ ଆଦେଶ···(ବାଇଧର ସନ୍ତର୍ପଣରେ ଆସିଛି)

ରାଜା—ବାଇଧର ! ଏ ବନ୍ଦଯୁରେ ଦରବାର ମୁଁ ପରାମର୍ଶ ନିଷ୍ପତ୍ତି ନେବ । ତା' ପୂର୍ବରୁ ଜନପଣ୍ଡମାନଙ୍କ ସମ୍ମତିନେଇ ତୁମକୁ ଜଣାଇବ । ଏଥିରେ ତୁମର କଷ୍ଟ···

ବାସ୍ତା—ପ୍ରଭୁ ! ଜନପଣ୍ଡମାନଙ୍କୁ ପଚାରିଲେ ମୋ' କଥାର ତାତ୍ପର୍ଯ୍ୟ ତୁମକୁ ଆସିବ ମହିମା । ମୁଁ କେବଳ ଜନସାଧାରଣଙ୍କ ଭାବନାକୁ ମହିମାଙ୍କ ପ୍ରମୁଖରେ ଜଣା କରିଛୁ ।

ରାଜା—ଜନପଣ୍ଡମାନେ ସମ୍ମତ ହେଲେ ଅର୍ଥର ବ୍ୟବସ୍ଥା କରିବ । ଆନୁସଙ୍ଗିକ କାର୍ଯ୍ୟର ଦାୟିତ୍ୱ ତୁମକୁହିଁ ନେବାକୁ ହେବ···
(ରାଜା ଚାଲିଗଲେ ଭିତରକୁ)

ବାସ୍ତା—ମୋତେ ?

କବି—ହଁ । ଏ ଜନପଦର ଜନପତ ଏ ଦାୟିତ୍ୱ ନେଇଥାନ୍ତେ । ସାଧାରଣଙ୍କ ଚିନ୍ତା ଯଦି ତୁମଦ୍ୱାରା ପ୍ରକାଶିତ ହେଉଥାଏ ବରଂ ତୁମେ ଏ କାର୍ଯ୍ୟଭାର ନେବା ଅଧିକ ଯୁକ୍ତି ଯୁକ୍ତ···

ବାସ୍ତା—ଜ୍ଞାନପଣ୍ଡ ଥାଉ ଅଉ···

ଋଷି—ମହାରାଜ୍ଞ ଜାଣିନଥାଇ ପାରନ୍ତି । ବାଇଧର ! ପ୍ରତ୍ୟକ୍ଷ ଭାବେ ନହେଲେ ମଧ୍ୟ ଏ ଅଂଚଳର ପ୍ରତ୍ୟେକଟି ଘଟଣାରୁ ମୁଁ କଳ୍ପନା କରୁ ଜାଣିବାର ସୁଯୋଗ ପାଇଛୁ । ତୁମେ ଯୁବକ, ବାହୁରେ ତୁମ ଅସୀମ ଶକ୍ତି ··· ମନରେ ତୁମର ଉଦାର ସ୍ୱପ୍ନ···ଚେଷ୍ଟାକର । ଲୋକ ଶକ୍ତିହିଁ ଲୋକ କଲ୍ୟାଣର ଜାଗ୍ରତ ପ୍ରହରୀ···ଆବଶ୍ୟକ ହେଲେ ମୁଁ ମଧ୍ୟ ସାହାଯ୍ୟ କରିବ ।

(ଋଷି ଭିତରକୁ ଗଲେ । ବାପୁ ପ୍ରଣତ ଜଣାଇଛି)

## ଷଷ୍ଠ ଦୃଶ୍ୟ

[ଗ୍ରାମର ଅଂଶ ବିଶେଷ:—ସୁମୀ ନଈରୁ ପାଣି ନେଇ ଫେରୁଥିଲା, ହଠାତ୍ ପ୍ରବେଶ କରନ୍ତି ସପନା—ସୁମୀ ଆଗରେ ରହିଯାଇ]

ସପନା—ଏଥିରେ କାହିଁ ଉଣିବଟି ନୂଆ ବୋଉ ? ଏତରେ ବୋହୂ ହବାକୁ ତୁମକୁ ଘର ଭଲ ଲାଗୁନି ନାହିଁ ?

ସୁମୀ—ଉଠମ, ତୁମ ସାଙ୍ଗେ ବାତେନ କରିବାକୁ ମୋର ବେଳ ନାହିଁ । ତେଣେ ମୋର ଦୁନିଆଁଟା ଯାକର କାମ ପଡ଼ିଛି···

ସପନା—କାମ-କାମ-କାମ, ଖାଲି କାମ ଛଡ଼ା ତୁମେ ସବୁ

ଯେମିତ କିଚ୍ଛି ଜାଣନ୍ତି । ଆଜ ଖାଲି ମାରୁଛ କେତେ ବେଳେ ?

ସୁମୀ—ଆହା, ତୁମ ନୂଆ ବୋଉକୁ ତ ଭାରି ଦେଖି ପାରୁଛ ?

ସପନା—ତୁମେ ଖାଲି ଏମିତ ହସିଦେଇ କଥାଟାକୁ ପରତେକୁ ଆଣୁଛ ।

ସୁମୀ—ହଉ ହଉ ବେଳ ଆସୁଛି ମ···ଦେଖିବ ଯେ

ସପନା—କାହିଁ କହୁନ କ'ଣ ଦେଖିବ ?

ସୁମୀ—ହଉ ତୁମର ସିଏ ଆସୁ ଦେଖିବ କେତେ ଝାଁଗିମ ତୁମେ ତାକୁ ଦେଉଛ ?

ସପନା—(ଲାଜରେ) ଦେଖ ନୂଆବୋଉ, ଯାହା କହିଲେ ତୁମେତ କଥାଟାକୁ ସେଇ ଆଡ଼କୁ ବୁଲେଇ ନେଇ ଗଲ ?

ସୁମୀ—ଜମା ଭଲ ଲଗୁନି ? ହଉ ଉଠ ଉଠ ।

ସପନା—ଏ ନୂଆବୋଉ ଏତେ କାମ କରୁଛ । ଗାଁ କାମକୁ ବାହାରିବଟି ?

ସୁମୀ—କାହିଁକିମ ? ଆମେ କ'ଣ ବସିଛୁକି ?

ସପନା—ଏକାମ ନୁହେଁ ନୂଆବୋଉ !

ସୁମୀ—ଯେଉଁ କାମ ହେଉ ତୁମେ ପାରବ ଆମେ ପାରନ୍ତୁନ । କ'ଣ ବୋଲ ପାଇଚନ୍ତ ?

ସପନା—ନାଇଁ ନୂଆଁ ବୋଉ ଯିଣିପି କାମ ଆଉ ମାଇପି କାମ...

ସୁମୀ—ଆହାଃଲୋ ଯିଣିପି । ଖାଲି ବୁଲ, ଗପ ଏ କ'ଣ କମ କାମ

ସପନା—କାମ ନୁହେଁତ ଘର ସଂସାର ଚଳୁଛି କେମିତ ?

ସୁମୀ—ମଣଯାଉଚା ଏଣି...ଘର ପୁଣି ସଂସାର । ହଉ ଯାଅ ଯାଅ, ସେ ଆସନ୍ତେ ନହେଲେ ଖୋଜିବେ...

ସପନା—କ'ଣ କହୁଲ । ଏତେ ବଡ଼ କାମଟାଏ ହେବାକୁ ଯାଉଛି କହୁଛ କିଛି କରୁନୁ ।

ସୁମୀ—ହଉ ସପନା ! ସତରେ କ'ଣ ବନ୍ଧ ହେବ ? ମା ଭଗବତୀ ! ଅପାତ କୁଆଡ଼େ ଯାଆନ୍ତା ନା—ଆଜି ଯାଇଛନ୍ତି । ସ୍ୱାଆସନ୍ତେବ ।

ସପନା—ଥଯ୍ୟଧର ନୂଆବୋଉ । ତୁମେ ଆଉ ହଇରାଣ ହୋଇ ବର୍ଷାଦିନେ ଆଁଠୁଆଣି ପାଣି କାଦୁଅରେ ପା' ଦେବନି ।

ସୁମୀ—ଉଠମ, ଏ ଅଲଣା ବେଲି ଗୁଡ଼ାକ ସତେ ଦେଖେଇବ ।

ସପନା—ବେଲି ନୁହେ ଗୋଲ୍ଡ-ନୂଆବୋଉ, ଦେଖିବ ଏଥିକି ଆମ କୁବେରପୁରୀ ଯଗୀକନିଆଁକୁ କେହି ହାତଛଡ଼ା କରି ନେଇ ଯିବେନି...

ସୁମୀ—ସେ ପଂସ୍ୱ କନିଆକୁ କେବେ ଆଣୁନ୍ଥ କହୁଲ ?

ସପନା—ତୁମେ ସବୁ ପର ଅଛ···

ସୁମୀ—ସପନ, ବଡ଼ ଦୁଷ୍ଟ ହେଲଣି (ଆଡେଇ ହୋଇ ଗୁଲଗଲା)

ସପନା – ନୂଆବୋଉ, ନୂଆବୋଉ ସମସ୍ତେ ଏଇଲେ ଫେରିବେ । ମଙ୍ଗଳ କଳସୀ ଥୋଇ ଶଙ୍ଖାକୁ ଧରି ରହିଥା (ଖୁସିରେ ଫେରୁ ଫେରୁ ହାଣ୍ଡୁକୁ ଦେଖି କୁଣ୍ଢେଇ ପକାଇଛି) ହାଣ୍ଡୁ କକା, ମୋ କକାଲେ

ହାଣ୍ଡୁ—ଆରେ ଆରେ ଏ କ'ଣ ବୁଢ଼ାଟା ଆରେ କ'ଣ ଖଣ୍ଡ ଅଖଣ୍ଡ ହୋଇଯିବ ?

ସପନା—ମୁଁ ବାପ୍ୟାଇ' ପାଖକୁ ଭାହାଣିଲା ବେଳକୁ ସୁମୀ ନୂଆବୋଉଙ୍କ କାଖରେ ପୂର୍ଣ୍ଣ କଳସୀ, କକା କକା ଏଇଲେ ବାପ୍ୟାଇ ଫେରିବ । ଏଇଲେ ରଜାଙ୍କ ପାଖରୁ ଫେରିବ···

ହାଣ୍ଡୁ—ରଜାଙ୍କ ପାଖରୁ ? ସେ ତେବେ ଯାଇଥିଲ ?କାହିଁ ମୁଁ ତ···

ସପନା—ସେମିତ ଗୁଲଗଲ, ଜନପଦ ବୋଲି ପରିଚୟ ଦେବନି··· ପରିଚୟ ନଦେଲେ ବ···

ହାଣ୍ଡୁ—ଆରେ ସେଇ ଜନପଦ—ଥାନପଦ । ଖାଲି ବୁଝିବାକୁ କହୁଛସିନା, ହେଲେ ଜନପଦ ପରିଚୟଟା ଦେଇଥିଲେ

କ'ଣ ମହାଭାରତଟା ଅଶୁଦ୍ଧ ହୋଇଯାଇ ଥାଆନ୍ତା ? କେତେ ଭେକଥିଲେ ସିନା ଭିକ୍ଷ ମିଳିବ ।

ସପନା—ତୁମେ କଣ କହୁଛ, ପାଗ ପଟୁଆର ନଥିଲେ ଯାତର ପୂଜା କରାଯାଏନା, କୀର୍ତ୍ତିର ଆଦର କରାଯାଏନା ? ବୁଝିଁଲେ କଣ ଭେକ ସିନା ନାହିଁ । ଜନପଦର ପରଂପରା ଜନପଦର ବସ୍ତୁର ଶନ୍ତା ବାପୁ ଭାଇଠୁ ତ କେନ୍ଦ୍ର କାଢ଼ ନେଇନି, ତା କଥାରେ ପଥର ବ ତରଳି ଯିବ (ଭିତରୁ ଚାଟି ହେଲା) ଏଇ ବାପୁ ଭାଇ ଆଇଲାଣି । ମୁଁ ଯାଉଛି କଣ (ଦଉଡ଼ ଗଲା)

ହାଡ଼ୁ—ଆରେ ବାଇଧର । ବାଇଧର (ହାଡ଼ୁ ବ ଗଲା ଭିତରୁ ପାଟି ଶାନ୍ତ ହୋଇ ଆସିଲା ବେଳକୁ ଗ୍ରାମବାସୀ, ଲୋକ, ହାଡ଼ୁ ପ୍ରବେଶ କଲେ) ଦେଖିଲୁ ବାପ ଲୋକ, ଘୃଷ୍ଟ ଘର ପୂଅ ଗୃହ । ହଇରେ ମହାରାଜାଙ୍କ ପାଖକୁ ଯାଇ ଏକା-ଥରକେ କାମ, ତା'ପୁଣି ପଞ୍ଚଅରଦ୍ଧନ ଶୁଦ୍ଧ କଆସିବ ।

ଲୋକ—ତୁମେତ ବୁଝିଁଲନି କଣ । ସେ କଣ ଯାଉଥିଲେ କି, ବୁଝେଇ ଶୁଝେଇ ପଠେଇଲନି ନା ? ଯୁକ୍ତି ହେ। କଳି କଥାଟା କ'ଣ କରିବା ।

ହାଡ଼ୁ—ହଇରେ ପୁଣି ସେଇ କଳି କଥା । କଳି କଥାରେ ବାପୁ ରାଜା ହେଲା ନାହିଁ ବୋଲିତ ତରସ୍ତା ସାଲରୁ କଥାଟା ଗଡ଼ ଗଡ଼ ଶେଷକୁ ରାଜାଙ୍କ କାନକୁ ନେଲା, ଆଜ କଣ ?

ଲୋକ—ବାପୁଭାଇ ସିନା ମନା କରୁଛନ୍ତି, ଏତେ ବଡ଼ କାମଟାଏ ହେବ । ସମସ୍ତେତ ହଁ ଭଣୁଛନ୍ତି···

ହାଡୁ—ନାଁ ! .ଲୋକେ ଖାଲି ମାତଗଲେ କ'ଣ ହେବ । କର୍ତ୍ତା
ସେ । ସେତ ନାହିଁ କରୁଛନ୍ତି । ତା ଛଡ଼ା ମହାରାଜାଏ ବା
କାହିଁକି ଏ କଥାରେ ରାଜିହେବେ ?

ଲୋକ—ମହାରାଜା କାହିଁକି ଜାଣିବେ କକା ? ସମସ୍ତେତ
ଆଗଭର । କିନ୍ତୁ ଏତେ ଚଳାଚଳାନ୍ତ ହେଉଛନ୍ତେ···
ଡେଙ୍ଗରେ ହରୁବେଳେ ବୁଡ଼ି ହଜ ହାଉଛନ୍ତେ···। ହେଇଟି
ଶିବୁଧାଙ୍କ ଆସୁଛନ୍ତି । ବଡ଼ ଥିଲେ ପଗ୍ଭର, କକା, କକା···

ହାଡୁ—ହଁ ପଗ୍ଭର···

(ଶିବୁ ପାଣ୍ଡୁ ପ୍ରବେଶ କଲେ । ଶିବୁ ମୁଁହରେ ବିରକ୍ତି)

ଶିବୁ—କ'ଣ କରେ ଲୋକ ? କ'ଣ ହାଡୁ ? ମାଛିକି ମ ବୋଲି
କହେନପଗ । ଆଜି କଣ ହେଲା ? କଣ ନା ମୋତେ
ସବୁ ଦାୟିତ୍ୱ ଦିଆଯାଇଛି···

ଲୋକ—କାହିଁକି ଦାଦା କଣ ନାକର କଥାଟା ହେଲା ?

ଶିବୁ—ନାଇଁ ଘର କାର କଥାଟା······କାହିଁକି ମଣିଷ ଜନପଦର
ଭଲ ମନ୍ଦ ଦାନ ଯାବା କଥାରେ ଶଙ୍କା ପଡ଼ବ । ଭର
ଏଣିକି ସବୁ·

ହାଡୁ—ଆଜିଯାଏ ଏତେ କହିଲି— କେହି କିଛି କଲେନି—
ଶେଷକୁ ସିନା ଗଲା । ଆଜ ତୁମେ···

ଶିବୁ—କ'ଣ ମିଛକଥାରେ । ଆରେ ବାବୁ ପୁଅ କଏ ପ୍ରଭୁଙ୍କ କଏ ?
ଗଲ ଭଲ ହେଲ । ହେଲେ ପୁଣି ଡାକର ପଡ଼ଲା ବେଳକୁ
ଦେଖା ନାହିଁ । ହୟେ ନାକ କାଣ ଚଲେ ପଡ଼ବା କଥା ।
ମୋ ପୁଅ ହୋଇଥିଲେ ରକ୍ତ ଚଟା ଖେଳୁଥାଆନ୍ତି ।

ହାଡ଼ୁ—କ'ଣ ହେଲ ଶିବୁ ଭାଇ !

ଶିବୁ—କଣଟେ ହୁଁ ହେବ, ମଲବ, ମରିବ ସମସ୍ତେ । ମହାରାଜା
କହୁଛନ୍ତି ବାସ୍ୟା କରେଇବ ବୋଲି ଶୁଣି ଆଉ ରାସ୍ତା
ହୋଇ ଗଲଣି—ଯେମିତି ଛୁଏଁ ଟେକା ଧରିବେ । କଉ
ଆଗରୁ କ'ଣ ଆମେ କଥାଟା କହି ପାରୁ ନଥିଲୁ । ତୁମର
ସାଉ ବଳ ଦେଖାଯିବନି । ଏଣେ ଡାକର ହେଲବେଳକୁ
ଦେଖା ନାହିଁ ।

ହାଡ଼ୁ—ସତରେ ଶିବୁ ଭାଇ ରାଜକୋଠରୁ ବଳ, ଛେଦକାର ଝାଳ
ବୁହାଇ ଦେବେ ବଳ —ଆଜି ପୁଣି ବଳ କାହିଁକି ?

ଶିବୁ—ମୋତେ ବୁଝାଉଛ କାହିଁକି—ଅବଧାନୀ କଳିବ ତ ରଜାଙ୍କ
ପାଖରେ କର । ଏତକ କ'ଣ ? ଦରକାର ପଡ଼ଲେ
ପନ୍ଦର ଶହେ ବର୍ଷ ପାଇଁ ଖୋଷଣୀ ମେଲ ରଖିଥାଅ ।

ହାଡ଼ୁ—ମହାରାଜ କ'ଣ ବଳ ପାଇଁ କହିଲେ · ।

ଶିବୁ—ଆଜି କ'ଣ ମୁଁ ମନଖୁସିରେ କହୁଛି—

ହାଜୁ—ଭଲ ହେଲା । କଣ ଲୋକ ? ମହାରାଜ ଯଦ୍ଧ କରୁଛନ୍ତି ବଳ ଦିଆଯିବ—କଣ'ଟା ପ୍ରଳୟ ହୋଇଗଲା ।

ଲୋକ—ହଁ, ହଁ, ଆମ କାମ । ଯିଏ ହେଲେ ତା ମୁଣ୍ଡରୁ ପାଣି ଛଡ଼େଇ ଦେଇ···

ଶିବୁ—ଆରେ ଆମ କାମ ଯେ, ଯିବ କଏ ?

ଲୋକ—କାହିଁ ମୁଁ—ହାଣ୍ଡୁକଳା···ତୁମେ···ସପନା

ଶିବୁ—ଚୁପ୍ । କହିଲା ସପନା, ହଁ ଦରକାର ହେଲେ ମୁଁ ଯିବି । ହେଲେ କଥାଟା ଠିକଣା ହେଉ । ତୁମର କଥାଏ ହେଲା ବେଳକୁ ବାପୁର କଥାଏ ଯଦ୍ଧ ହେବ···

ଲୋକ—ନାଇଁ ଦାଦା ଯିଏ ହେଲେ ଯିବ । ଆଉ ମହାରାଜା କ'ଣ କହିଲେ ଜଣେଇ ଦିଅ—

ଶିବୁ—କହିବେ କ'ଣ ? ଆରେ ମୁଁ ଗଲା ବେଳକୁ ଆମ ବାଇଧର ନାଇଁ । ମତେ ତା'କ ସବୁ ବୁଝିଲେ । ଆଜ୍ଞାପତ୍ର ଲେଖା ନେଇ ଧାଉଡ଼ିଆ ବଢ଼ିଲ ଜନପଦକୁ ଗଲେ ପାଇକ ମାନେ ଘୋଡ଼ାରେ ଦଣ୍ଡପଲ୍ଲୀ ନୀଳମାଧବ ଗଲେ ।

ଲୋକ—କ'ଣ ଯୁଦ୍ଧ ହେବକି ଦାଦା ?

ଶିବୁ—ମୂର୍ଖ, ଅପଗଣ୍ଡ ! ପିଲ ପଥର ବାଜୁଛୁ, ପଟା ପଥର

ଖିଣ୍ଟପାଳରୁ, ଷିଲ ଦଶପଲ୍ଲୀରୁ ଆସିବ । ଏ ଗୁଣ୍ଡା କ'ଣ ମନକୁ ହୋଇଯିବ ।···

ଲେଙ୍କ—ନାଇଁ ଦାଦା, ତା ପରେ ।

ଶିବୁ—ତାପରେ ଆଉ କ'ଣ ? ସେଇ ଅନୁସାରେ ଗୋଟାଏ ବଳି ଭୋଗର ବ୍ୟବସ୍ଥା କରିବାକୁ ପଡ଼ିବ । ଏଇ ଆଦେଶ ଦେଇ ମହାରାଜ ଯଜ୍ଞପୁରକୁ ବିଜେ ହୋଇଗଲେ ।

ଲେଙ୍କ—ଏ କାମ··

ଶିବୁ—ମହାରାଜାଙ୍କ ଗୋଟିଏ ପକ୍ଷିଘର ଏଇଠି ରହିବ । ଲୋକେ ଆସିବେ । ପଥର ଜନ ଶୁଭ ହଥାଯିବ···

ଲେଙ୍କ—ତେବେ କିଏ ବଳି ଦେଆଯିବ ? କିଏ ବଳି ପକାଇବ ? ସବୁ ଠିକ୍ କରିଦିଅ ।

ଶିବୁ—ନାଇଁ ବାପା, ତୁମେ ପିଲାଏ ବାହାରିଛ କର । ଆଗରେ କିଏ ମନା କରୁଛି । ସେ ବାସୁ ସବୁ ଠିକ୍ କରୁ । କ'ଣ କହୁଛ ?

ହାଡ଼ୁ—ତୁମେ ଏ କାମଟା କରାଇ ଦେଇଥିଲେ···

ଲେଙ୍କ—ନାଇଁ—ଷବୁତ ଭାଙ୍ଗ ଥିଲେ । ସ୍ୱାଙ୍କୁ ପୁଣି ଭାରଦେଲେ କ'ଣ କେଁ ଠାଏ ପୂରେଇ ଦେବେ । ସେଇ ବାସୁ'ଇ

କରୁ । ଗାଁ ଯାକ ସବୁ କହିଲେ, ସେ ଯାହା କହିବ
ସେଇୟା ହେବ ।

ଶିବୁ—ଦେଖ ହାଡ଼ୁ ଦେଖ । କରେ ମୁଁ କ'ଣ ପଲ୍ଲୀରୁ ବାହାର ।
ହେଲେ ବାପୁଆଠା ସବୁ କଣିବ—ଭଲମନ୍ଦ ଅଛି—ବଳି
କଥା— ଅନ୍ଧାର ଘର । କେହି ନଥିବେ, ପିଲାଠାନା ?
ଏଣେ ବଳିକୁ ବନ୍ଦତ କରି ହେବନି । ଶାସ୍ତ୍ରରେ ଅଛି··
ପୁରୁଷ ପୁରୁଷର ଚଳଣି, ସେଥିରେ ପୁଣି ମହାପ୍ରଭୁଙ୍କ
ଶ୍ରୀମୁଖ ଆଦେଶ···ହଉ ହାଡ଼ୁ, ଟିକିଏ ବାପୁଆକୁ ବୁଝେଇ
କହିଦେ । ବୁଝି ଶୁଝି ଚଳାଇ ନେଉ···

ହାଡ଼ୁ—ହଉ ମୁଁ ଯାଉଚି କହିଦେବି [ହାଡ଼ୁ ଗଲା ତା ପଛେ
ପଛେ ଲୋକ ଗଲା ବେଳକୁ]

ଶିବୁ—ହଇଟର ଲୋକ ଶୁଣୁ ବାପ, ହଇରେ ବୋହୂ ପୁଣି ଆଜ
ାଇଥିଲା ।

ଲୋକ—କଣ ପ୍ରଳୟ ହୋଇଗଲା । ସେତ ସମାର୍ଜନାକୁ ଯିବା କଥା'।
ସେ ଯିନା ଯାଉନଥିଲେ, ମାଇପି କୁଳ ବଧିତ ତାଙ୍କର
କଥାରେ ଗୃହଲେ···

ଶିବୁ—ହଁ । ନାଇଁ ଯେ—ସେଇଟା, ଭଲମନ୍ଦ ହେଲା ବେଳକୁ
ପରସର ଝିଅ ସେ, କାର୍ତ୍ତିକ ଭ୍ରାବର ଦାଦା ବଡ଼ ହୋଇ
ଥିଲେ କିଛି କହିଲେନି···ଆଗୁ ଗାଁ ଲୋକେ ବାହାରି-
ଲେଣି, ହଁ ହଁ ଆମର କଥା ଆମେ ନ ବାହାରିଲେ

ହେବ କେମିତ...ହଉ ଯା (ଲୋକ ଚାଲି ଯାଇଥିଲା)
ହେଲଣି ବାପ ତୁମ ପଦବୀ କଥା କରୁ କହି ହେଲାନ—

ଲୋକ—କହିଲିନା ଦାଦା? ତୁମକୁ ମୁଁ ଏତେଥର କହିଥିଲି...

ଶିବୁ—କାହିଁ ଏଣିକି ବାଇଧର କହିବ । କରେ ଆମରତ ଉପରେ
ସର ବନ୍ଧେଇ ଦେଇ ଭିତରେ ପୋକ ପକା କଥା ନୁହେଁ ।
କଥାରେ ଯାହା କାମରେ ସେଇୟା ।

ଲୋକ—ଦାଦା ତୁମେ ଯେଉଁଦିନ ଦଳବେହେସ ଶିରପାଠା
ବନ୍ଧେଇ ଦେବନା ସେଇଦିନୁ ତୁମ ପାଦ ଯେଉଁଠି ମୋ
ମୁଣ୍ଡ ସେଇଠି । ତୁମେ ଯେଉଁଠି ମୁଁ ସେଇଠି । ତା
ନହେଲେ...

ଶିବୁ—ବାସ୍ତାର ଲଙ୍ଗଡ଼ା ହୋଇ ଭୂତପରି ବୁଲୁଥିବୁ । ବୁଲ,
ବୁଲ୍ ବାପ । କି ଗଣ୍ଡିଆ ପେଣ୍ଡୁଠାଏ ଯେ ଏଇଥି ଲାଗି...
ହଇରେ ବାପା ଚେଡ଼ିଚାକୁରୁ ଦଣ୍ଡଆ ମଣ୍ଡିରେ ବୋଇତ
ଗଲେ ଆମର କଣ ଯାଉଥିଲା । ଏଥିପାଇଁ ସମସ୍ତଙ୍କୁ
ଜଣେଇଲ କଣ...

ଲୋକ—ନାଇଁ ଦାଦା ସେମିତ କହି ଦେଉଚ ନା...

ଶିବୁ—ଚଣ୍ଡାଳ—ଦେଖ୍ ଦେଖ ପାଣ୍ଡୁ! କରେ ସେ ଚମ ପଦବୀ
କଥା କଣ କହିବ ? ଆମ ସପନ କଥାତ ଦେଖୁଛୁ ।
ତୋର ଉପରେ ଭରସା ରଖି ତୁମ ଭଲ୍ ଲାଗି ସିନା...

ପାଣ୍ଡୁ—ହଁ ତା ନୁହେଁ କ'ଣ ଖାଆନ୍ତେ ।

ଲୋକ—ପାଗଳେ ହେବନା (ବାଡ଼ ମାରିଲା ପରି ଶିବୁ ଦେହରେ ବାଡ଼େଇ ହୋଇଗଲା)

ଶିବୁ—ଦେଖ ଦେଖ ଯୁଆଙ୍କ ମାନଣା—

ଲୋକ—ମାନଣା, ମୋତେ ତ ଏତେବେଳେ ଚଉଦ ଭୁବନ ଅନ୍ଧାର । ଝଟରେ ତ ଏଇଥିଲାଗି ମାଡଗୁରୁବାର ଗମାଯୁଣ ।

ଶିବୁ—ହଉ ହଉ ଯଣ୍ଡ ସଂଗ୍ରାଳ କାମ କର । ଟିକ୍ ସବୁ କଲେ ତୋ ବଦଳୀ କଥା ଏଇଥର କହିବ ।

ଲୋକ—ଯେତିକ କଣଦାଅ—ମୋ କଗମଡ ଦେଖିବ । ଆକାଶ ପାତାଳ ଉପାତଳକୁ ମୁଁ ଯଦି ଏକାଠି ନ କରି ଦେଇଛି ?

ପାଣ୍ଡୁ—ସମସ୍ତେ କ'ଣ ସବୁ କରି ପାରନ୍ତି ଲୋକ ଏ ଆନ୍ତେ ? କାମ କଣ ଖାଲି କହିବାହେବା କଥା । ଏମାନେ, କହନ୍ତି ଯେଉଁଠେ ନୁହଁନ୍ତି ସେଇଠେ

ଲୋକ—କଣ କହିଲୁ "କହନ୍ତି ଯେଉଁଠେ ନୁହନ୍ତି ସେଇଠେ "। ଆଉ କିଏ କହନ୍ତି ଯେଉଁଠେ ନୁହଁନ୍ତି ସେଇଠେ, କଥା କହି ଶିଖୁଛି ।

ଶିବୁ—ଚଣ୍ଡାଳ, ସେ ତୋତେ କହିଲା, ଯା, ହଁ ବାପା କବଳରେ ଯେମିତ ଖଇଗୁ ନ ରହେ । ଏଉଁ କାମ—ନରବଳି—ନରବଳି ବୁଝିଲୁ—

ଲେକ—ଦେଖ ଦାଦା, ଲୋକ କଣ କରୁଛନ୍ତି (ଲୋକ ଗୁଳିଗଲା)

ପାଣୁ—(ଗୁରବଆଡ଼କୁ ‘ଗୁର୍ହିଁ') ସାଆନ୍ତେ, ତମେ ଆପଣତ ମହାରାଜାଙ୍କୁ ଦେଖିନ ।

ଶିବୁ—ଆବେ ଚୁପ୍ ! ହାଡ଼ୁ ଗଲା । ଲୋକ ଗଲା । ଲୋକଙ୍କ ଝୁଙ୍କି ଲାଗିଛି, ତୁ ଲୋକଙ୍କ ଭିତରେ ପଶିଯା । ଏ ବାଲି କଥାଟାକୁ ଏମିତ ଗଣ୍ଡି ଦେବୁଯେ, ମୁଁ ତ ଦେଉଛି, ଟିକଏ ଟିକଏ ଟାଣି ଦେଉଥିବୁ··· ଦେଖିବ ଯିବ କୁଆଡେ । ଯା, (ପାଣୁ ଗୁଳିଗଲା) ଭୁଣ୍ଡ ବାଇଦ ସହସ୍ର କୋଣ···ସ୍ୱାର କଥାରେ ସବୁ ହୋଇଯିବ···ଦେଖିବ ଯେମିତ ଯଜ୍ଞ ଭୁଆଁ ଭୁଲ୍ ନ ଥିବୁ···

(ଶିବୁ ଗୁଳିଗଲା ମଂଚ ଅନ୍ଧାର ହେଲା)

## ସପ୍ତମ ଦୃଶ୍ୟ —

ଘୋଷଣା — "ଦିନେ ଗଲା ଦୁଇ ଦିନ ଗଲା । ବାୟୁ। ମୂକ । ନୀରବ । ପରିବାରରେ ତାର ଏକ ଦ୍ୱନ୍ଦ୍ୱ'। ପାଖେଇ ଆସିଛି ଶୁଭ ଦିନ । ଆଜି ନିଶା ଗର୍ଜୁଥିବ···ଚତୁର୍ଦ୍ଦିଗ, ନିର୍ଜନ, ନିଶବ୍ଦ, ନିସ୍ତୁପ୍ ବଳି ବେଗର ରକ୍ତ ପୃଷ୍ଠରେ ବସିବ ଶୁଭସ୍ତମ୍ଭ···";

[ ମଂଚ ଆଲୋକିତ ହେଲା । ବାୟୁର ସେଇ ଘର, ସେଇ ସାଜସଜ୍ଜା । ଶୁଭ ଆସି ପହଞ୍ଚିଛି । ସ୍ପର୍ଶ କରିବା ମାତ୍ରକେ ବାୟୁ ଚମକି ପଡ଼ୁଛି ]

ଶୁଭ—ବାପା ତା ପରେ କ'ଣ ହେଲା ?

ବାପ୍ପା—କ'ଣ ହୋଇଥିବ କହନ୍ତୁ ?

ଶୁଭ – ଧର୍ମର ଜୟ ନିଶ୍ଚେ ହୋଇଥିବ, ଠିକ୍ ନଚିକେତାଙ୍କ ପରି ।

ବାପ୍ପା – ହଁ ସେଆ ହେଲା

ଶୁଭ—ତେବେ ବୋଧିସତ୍ତ୍ୱ କ'ଣ ?

ବାପ୍ପା—ନାଁ ବୋଧିସତ୍ତ୍ୱ ଫେରିଲେ ଅନ୍ୟ ରୂପରେ । ଦାନ ସତ୍ୟର ପରୀକ୍ଷା ହେଲା ।

ଶୁଭ—ବାପା ଠିକ୍ ତ ଏମିତ ଫେରିଥିଲେ ବଶିଷ୍ଠଙ୍କ ଧନ ?

ବାପ୍ପା—ହଁ

ଶୁଭ—ମୁଁ ସେମିତକା ହେବି ବାପା

ବାପ୍ପା – ହଁ (ସଂଶୟ ଫେରିପାଇ) ଯେ ସବୁ ସୌଭାଗ୍ୟର କଥା ବାପା, ତୁ ଯା···

ଶୁଭ—ନାଇଁ ବାପା ତୁମେ ନ ଗଲେ ମୁଁ ଖାଇବିନି··

ବାପ୍ପା—ଛିଃ··· ଯା ଖାଇଦେବୁ । ମୁଁ ଖାଇବି ଯେ··· ଯା [ବାରମ୍ବାର କହିବାରୁ ଶୁଭ ଚାଲିଗଲା । ବାପ୍ପା ଚିନ୍ତିତ । କିଛି ସମୟ ପରେ ପ୍ରବେଶ କରିଛି ସପନା – ଘରଭିତରୁ]

ସପନା—କ'ଣ ବାପୁ'ଇ, ଉନ୍ମାଦନ ହେଲ, ଖିଆ ପିଆ ନାହିଁ, ଶୁଆ ନାହିଁ; ସମସ୍ତେ ଉପବାସ । କ'ଣ ଗୋଟାଏ ଠିକ୍ କରୁନ କାହିଁକି ? ଆଜି ଆଉ ପହରେ ଗଲ ପରେ ଶୁନ୍ଧ ଢଆହେବ···

ବାପୁ—ଏଁ ପରୀକ୍ଷାର ଶେଷ କେବେ ସପନା ?

ସପନା—ତୁମେତ କୁହ ପରୀକ୍ଷାର ଶେଷ ନାହିଁ । ପ୍ରତ୍ୟେକଟି ଗୋଟିଏ ଗୋଟିଏ ପରୀକ୍ଷା ।

ବାପୁ—ସେଥିଂଲାଗି ତୁ ସଧ ଅଭାରେ କହିଦେଲୁ··

ସପନା—ତୁମେ ସବୁ ଠିକ କରିବ, ଏପୁନା ? ଆଉ ଉପାୟ ନଥିଲ ବାପୁ'ଇ ! ତୁମେ ସିନା ଜାଣିନ— ସରଳତା ସହିତ କୁଟିଳତାର ମଧ୍ୟ ସ୍ଥାନ ଅଛି । ସରଳତା ଶକ୍ତିଶାଳୀ ହୋଇ ପାରେ ମନା କରୁନ । ହେଲେ କୁଟିଳତା ଯେଉଁ ମାୟାଜାଲ ସୃଷ୍ଟି କରେ···

ବାପୁ—ମାୟା ଜାଲ !

ସପନା—ହଁ ବାପୁ'ଇ! ତୁମେ ଜମା ବୁଝିଲନି ? ଆସ୍ଥା କହିଲୁ ଗାଁ ସଭାରେ ମୁଁ କାହିଁକି ସେମିତି ପ୍ରସ୍ତାବ ଦେଲି ? ମୁଁ କ'ଣ ଗୁହେଁ ବଲି ? କରୁ ଉପାୟ କାହିଁ ?

ବାପୁ—ତେବେ ଲୋକେ କ'ଣ···

ସପନା—ସେରେ ସେଇ କଥା କହିଲ ? କାମ ଲୋକେ ଲୁହାନ୍ତି । ବାପା ମନା କରିଥିଲେ ଅବଶ୍ୟ ଆମେ ଅନ୍ୟ ପନ୍ଥା ଗ୍ରହଣ କରିଥାନ୍ତେ । ତେବେ ଯେମିତି ହେଲେ କାମତ ହୁଅନ୍ତା ।

ବାପ୍ପା—ହଁ ।

ସପନା—ଠିକ୍ ସେମିତି ଏ'ଠି କାମ ବନ୍ଦ ନ କରିଦେବା ପାଇଁ ମୁଁ କହିବାକୁ ବାଧ୍ୟ ହେଲି, ତୁମେତ ଜାଣ ବାପ୍ପା'ଇ । ମୋତେତ ଆଜ୍ଞା ପଗୁରନ୍ମ । ଭଲ ମନ୍ଦ ସବୁ ଏଡ଼େଇ ଦେଇ ଆମକୁ ଆଗେଇ ଯିବାକୁ ହେବ ।

ବାପ୍ପା—ଆଗୁ କହିଲୁ ସପନା—ମା କେବେ ପୁଅର ରକ୍ତ କାମନା କରେ ? ଶୋଣିତରେ ଶାନ୍ତିର ଶୁଭ ସ୍ତମ୍ଭ କ'ଣ ସମ୍ଭବ ? ବରଂ ନିରର୍ଥକ ପ୍ରାଣହାନୀ ଅପେକ୍ଷା କାମ ବନ୍ଦ ହୋଇ-ଯିବା ଉଚିତ୍...

ସପନା—କ'ଣ କହିଲ ବାପ୍ପାଭାଇ ! ବଦଳରେ ଶହ ଶହ ପ୍ରାଣହାନି, ମାସ ମାସ ଲୁହ ଲହୁ, ଅଭାବ ଅନାଟନକୁ ତୁମେ ସ୍ୱୀକାର କରିବ ? ଅଥଚ, ମହାପ୍ରାଣ ରକ୍ଷାଲାଗି ଜଣକର ପ୍ରାଣ ତୁମ ପାଖରେ ଏତେ ବଡ଼ ?

ବାପ୍ପା—ନା, ରେ ସପନା ତା ଯାହା ହୁଅନ୍ତା ଜଣେ କାହିଁକି ସମୁଦାୟ ପରିବାରକୁ ଧରି ଆଗ ଡେଇଁ ପଡନ୍ତି...

ସପନା—ଏମିତି ଭାବେନା ସମସ୍ତଙ୍କର । ସମସ୍ତେତ ଦୁଃଖକୁ ଅଂଗେ

ନାଭେଇଛନ୍ତି । ସେଥିପାଇଁ ତ ପ୍ରତ୍ୟେକ ଆଗେଇ ଆସିଛନ୍ତି ।

ବାପୁ—ତେବେ ସତ୍ୟର ଉପଲବ୍ଧି ହେଲା କେଉଁଠି ? ସଙ୍କଟରେ ଜୀବ ହତ୍ୟା? ନାଁ-ନାଁ- ଏତ ଗୋଟାଏ ଯୁଗ ରୁଢ଼ ପ୍ରଥା···

ସପନା—ଜାଣିଛୁ ବାପୁ'ଇ! ହେଲେ ତୁମେ କ'ଣ ଜାଣିନ ପ୍ରଥାରେ ପରିବର୍ତ୍ତନ ସମୟ ସାପେକ୍ଷ ବୋଲି । କିନ୍ତୁ ଏଇଲେ ଏ ଗାମରେ ହେଲା, କ୍ଷୟ କ୍ଷତ ଛଡ଼ା···

ବାପୁ—କିଛୁ ଠିକ୍ କରି ପାରୁନ ସପନା ! ସିଏ କିଏ ? କାହାକୁ କହିବି ? ସିଏ ଯାଉ ସିଏତ ତା ଜନମୀ ନୟନର ପିତୁଳା ହୋଇଥିବ···ବାପାର ଆଶା ଭରସା ହୋଇଥିବ···ସ୍ତ୍ରୀର ସ୍ୱାମୀ ହୋଇଥିବ· ·ସ୍ୱାମୀର···

ସପନା—ନାଁ, ନାଁ, ତୁମେ ମୋତେ ପଠାଇଦିଅ । କିଏ କହିବାକୁ ନଥିବ । ମାଁ' ନାହିଁ ଲୁହ ଗଡ଼େଇବାକୁ···ଆଉ ଏ ଗାମରେ ପ୍ରାଣଦେବା ପୁଣ୍ୟଠାରୁ ··

ବାପୁ—ସପନା ! ତୁ କ'ଣ ଜାଣୁନା, ପଲ୍ଲୀ ଲୋକେ ତୋତେ କେତେ ଭଲ ପା'ନ୍ତି ? ତୋତେ ପଠେଇ ଦେଲେ ଲୋକଙ୍କ କଥା ଛାଡ଼—ତୋ' ନୂଆବୋଉ ମୋତେ କ'ଣ କହିବ କହିଲୁ ? ତା ଛଡ଼ା ଶିବୁ ଦାଦାଙ୍କର ନୟନ ମଣି··· ସପନା ପରି ଗାଁର ସବୁ ଜନପଦ···

ସପନା—ମୁଁ··· (ହସିକି) ଛନପଡ··· ବାପ୍ପା'ଇ ! ଆଜ କହୁ ନହେଲେ ବ ତୁମ ପାଖେ ରହି ଏତକି କ'ଣ ଶିଖିନ ? ସିଏ ଦୁର୍ବଳ ତାର କ୍ଷମତା ଲେଡା ଧୁଏ । ମୋତେ କ'ଣ ଏତେ ଦୁର୍ବଳ ବୋଲି ଭାବୁଛ ?

ବାବା—ନାଁରେ ପାଗଳୀ ମୁଁ ସବୁ ଠିକ୍ କରି ପାରୁଛି ।

ସପନା—ଠିକ୍ କରି ପାରୁଛ ବାପ୍ପା'ଇ ।

ବାପ୍ପା—ହଁ, ନଣା ଘଡରେ ଠିକ୍, ଥରେ ଖାଲି ମନ ପୁରେଇ ବଡାନାସୀର ଏ ମାଟି ପାଣି ଦେବନ୍ତୁ ପରଖି ନେବ । ସାଙ୍ଗରେ ଥିବୁ ତୁ । ମୋର ଉକ୍ତରେ ଶୁଭ ସ୍ତମ୍ଭ ପଡ଼ିବ··· ତୋ' ନୂଆ'ଜ ଆଜ ଶୁଭର ଯନ୍ତ୍ର ତୁ ନେବୁ···

ସାରଆ—(ପଦ୍ମଂଶ) ମୁଁ ଏଠି ଠିଆ ହୋଇଛି । ତୁମର କାହାର ଯିବା ଦରକାର ନାହିଁ । ମୁଁ ଯିବ ।

ଶୁଭ—(ପ୍ରବେଶ କରି) ମିଛ, ମିଛ ମା' ! ତୁମେ ଗଲେ ମୁଁ କେମିତି ରହିବ ? ବାପା ଗଲେ କାମ କେମିତି ହେବ ? ବାପା ! ତୁମେ ଫଗ କହୁଥିଲ ପାଣି ଅଟକେଇ ଫସଲ କରିବ ବୋଲି ? ତାକୁ କିଏ କରିବ ? ଆଜ ସପନା କକା, ଭାରି ଭଲ । କେହି ଯିବେନି । ମୁଁ ଯିବି··· (ସାରଆ ହଠାତ୍ କୋଳକୁ ଟାଣି ନେଲା, ସାରଆ ଆଖିରେ ଲୁହ ଦେଖି) ମା ! ତୁମେ କାନ୍ଦୁଛ ? ବାପାଙ୍କ କାମ କେମିତି ହେବ ? (ସାରଆ ହାତ ଚେଇଲ ତା ପାଟି

ବନ୍ଦ କରି ଦେଇଛୁ ) ସପନା ଜକା ତୁମେ ମୋତେ ନେଇ ଚାଲ—ତୁମେ ଯଦି ନ ନେବ ମୁଁ ଏକା ଯିବି··· ଡାକ୍ତ କେକେଙ୍କଠୁ ନେଇଯିବ ଷଣ୍ଡାଗା··· ବାଇଧର ଯୁଅମୁଁ । ମୋତେ କ'ଣ ସେ ମନା କରିବେ ? (ବାପାଙ୍କୁ ଚାହିଁ) ବାପା ! ତୁମେ ଚୁପ୍ ରହିଲ ? ହସୁନ···ମୋତେ ତୁମେ ଧର୍ମ ସତ୍ୟର କଥା କହୁଥିଲ ? ସେଇକଥାଣ୍ଣ ଫେରି ଆସିଲେ ଅନ୍ୟ ରୂପରେ ? ଚାଲ ଜକା···

ସାନ୍ଥଆ—ନା, ନା, ସପନା···

ଶୁଭ—ମନା କରନ୍ତୁନ ମା' ! ପାଣି ସୁଅ ମୋର ଜନନୀ··· ତୁମେ ଜନନୀଠାରୁ ଆହୁରି ବଡ...ଆକାଶ ମୋର ଜନକ··· ବାପା ଆକାଶଠାରୁ ଆହୁରି ବଡ··· (ସାନ୍ଥଆ, ସପନା, ବାପ୍ପା, ସ୍ଥିର ! ମୁଣ୍ଡରେ ଅସ୍ଥିରତା । ଆଲୋକରେ ମନସ୍ତାତ୍ତ୍ୱିକ ବିଶ୍ଳେଷଣ । ସ୍ଥିର ହେଲା ଆଲୋକ) (ସପନାକୁ ହଲାଇ) ଚାଲ ଜକା—

ସପନା—ଶୁଭ !

ଶୁଭ—ଶୁଭ ନୁହେଁ ଜକା (ନୀରବ ରହିବାକୁ ଇଙ୍ଗିତ କରି) ଶୁଭଙ୍କର...

ସପନା—ଯିବୁ ଶୁଭ··· ଯାଉଛୁ ବାପ୍ପାଇ ତୁମ କଥା ଅକ୍ଷରେ ଅକ୍ଷରେ ପାଳନ କରିବ···

(ସାରଥୀ ଆଶା କରୁ ନଥିଲା । ସପନା ଭୁଲ୍‌ଗଲା । ମୁଣ୍ଡ କଣ ହୋଇଗଲା । ବାପ୍ପା ନାଣ୍ଟୁଲ···)

ସାରଥୀ···ଶୁଣୁଛ ? ଶୁଣୁଛ···

ବାପ୍ପା—ଏଁ—!

[ସେତେବେଳକୁ ଗୃହଆଡ ଅଂଧାର ହୋଇଗଲା । ଅଂଧାର ଭିତରେ ମା'ମା' ଆଉଁ ଚିତ୍କାର, ସାରଥୀ ଚିତ୍କାର କଣ୍ଡ ପଡ଼ିଗଲା]



୧ ମ ଦୃଶ୍ୟ — ନଦୀବନ୍ଧ

୨ ୟ ଦୃଶ୍ୟ— ପ୍ରାନ୍ତର

୩ ୟ ଦୃଶ୍ୟ— ବାପୁାରଘର

୪ ର୍ଥ ଦୃଶ୍ୟ— ଶିବର ବହିର୍ଭାଗ

୫ ମ ଦୃଶ୍ୟ— ନଦୀବନ୍ଧ

୬ ଷ୍ଠ ଦୃଶ୍ୟ— ଅଳନ୍ଦ

୭ ମ ଦୃଶ୍ୟ — ପ୍ରାନ୍ତର

ଶେଷ ଦୃଶ୍ୟ — ନଦୀବନ୍ଧ

## ପ୍ରଥମ ଦୃଶ୍ୟ

[ ନନ୍ଦନବନ । ଶ୍ରମିକମାନେ ପଥର ଧରି ଯିବା ଆସିବା କରୁଛନ୍ତି । ଅସ୍ପଷ୍ଟ ଶ୍ରମ ସଙ୍ଗୀତ ମଝିରେ ମଝିରେ ଶୁଣା ଯାଉଛି । ଶିବୁ ଓ ପାଣୁ ପ୍ରବେଶ କଲେ । ଶିବୁ ଚାରିଆଡକୁ ସତର୍କତା ସହିତ ଚାହିଁ ଚୁପା-ଗଳାରେ ଆରମ୍ଭ କଲେ···]

ଶିବୁ—କ'ଣ ପାଣୁ? ଖବର ଦେଲୁ ?

ପାଣୁ—ହଁ ସାଆନ୍ତେ ।

ଶିବୁ—କ'ଣ ଆଉଥରେ ଯେମିତି କହୁଥିଲ ? ତୁମେ ଚଣ୍ଡାଳ ମୋତେ ସାରିଥିଲତ···

ପାଣୁ—କାମଟାତ ଜାଣି ଜାଣି କରୁଥିଲେ—ଆଜ ସରୁଥିଲ କ'ଣ ?

ଶିବୁ—ହଇରେ, ହଇରେ ଚଣ୍ଡାଳ ମରୁଥିବ କ'ଣ ? ଆଜ କ'ଣ ଥିଲ ? ଯୋଗକୁ ସିନା ପଥର ଖସିଗଲା ?

ପାଣୁ—ସେପଟ ଲୋକେ...ଏତେ ଚଲ୍ଲା ପରୁଚେ ହୋଇ ନଥିଲ ବୋଲି...

ଶିବୁ—ବାଳ ପାଚିଲେ ବୁଦ୍ଧି ଆସିବ— ବୁଝିଲୁ ? ହଇରେ ସାତ ଆଠମାସ କାମ ହେଲାଣି । ଆଜ ତେବେ ସେଗୁଡ଼ାକ ବାପୁଙ୍କୁ ଚିହ୍ନିବେ ? ସବୁ କଥାତ ସିଏ ଜାଣୁଛନ୍ତି । କୋଉ ଲୁଚି ବସିଛୁ...

ପାଣୁ—ନାଇଁ ହେ—ଉତ୍ତର ପଟିଆ ପଥର ବୁଢ଼ାଙ୍କୁ ପଠାଇ ଦେଲ ମୁଁ ହ ଅଂଧାରଟାରେ । ସେତିକି ବେଳକୁ ସେଇଠି ଯୋଗକୁ ସପନା ସାଆନ୍ତେ କାମ ଧରିଛନ୍ତି । ସେମାନଙ୍କର କ'ଣ ଅଛି ? ପକେଇବା କଥା ପକେଇ ଦେଲେ । ସିଏ ହଉ...

ଶିବୁ—ହଉ ହଉ । ଆଜ ପାର୍ଟି କରନା । ଅରକ୍ଷିତକୁ ଦାଇବ ସାହା । ନହେଲେ ବଂଶ ବୁଡ଼ିଥିଲା ତ...

ପାଣୁ—ତା ନୁହେଁ ଆଜ କ'ଣ ? ହେଲେ ଆଜ ଠିକ୍ ବେଳ ଉଣ୍ଡି କାମ ହେବ ।

ଶିବୁ—କ'ଣ ?.ଯେମିତ କହୁଛୁ ସେମିତ ହେଉଛୁତ ? ମେମ୍ବର ପୂଜିଆ କ'ଣ କହୁଲେ ?

ପାଣ୍ଡୁ—କହୁବେ କ'ଣ ? କଉଡ଼ିତକ ଦେଲ । କଥା ହେଲ, ଚନ୍ଦ୍ରକ ଯେଉଁ ପଟା ପଥରରେ ହେବ ସେତକ ବେଳକୁ ସେଇ ପଥରକୁ ଥୋଉ ଥୋଉ ମଡ଼ାଇ ଦେବେ ।

ଶିବୁ—(ଆଖି ବଡ଼ ବଡ଼ ହୋଇ ଯାଉଛୁ) ହଁ...ତୋ' କଥା ମୁଁ ସଙ୍ଗା ଆସିଲାବେ କହୁଛୁ । ଆରେ ଧନ ଥିଲେ ବ ସନମାନ୍ରତ ଦରକାର । କରେ ଖଣ୍ଡାଇତ ହୋଇ ଯଦ ଖଣ୍ଡା ଧରିବାକୁ ଡ଼ାକରା ନ ଆସିଲ କେଳେଙ୍କନ ଖାଲ ଏ କଣ୍ଠି ଧରଥିବ ?

ପାଣ୍ଡୁ— ସେଇତ...ଖାଲ ସେ ଲୋକ ସାଆନ୍ତେ

ଶିବୁ—ତା କଥା କହନା ପାଣ୍ଡୁ । ସେଇଟା ଗୋଟାଏ ଗୋବର ମାରୁ । କଥାର ଠିକ୍ ନାହିଁ, ବାଗ ଶାଗ କଛୁ ନାହିଁ । ସବୁ କଥାରେ ଆଗଭୁରା । ଆରେ ନାକ କଥା ଦେଖ...ହଁ ତୁ ଯା' । ମେମ୍ବର ପୁଜିଆଂକୁ କହିବୁ ଆଜ୍ଞୁର ପାନଖିଆ କଉଡ଼ି ଦେବ । ରାଜାଙ୍କୁ କହି ଶିରପା ବଂଧାଇ ଦେବ । ଯା—ମନେରଖି, ଚନ୍ଦ୍ରଦିଆ ପଟା ପଥର । ସେ ନିଶ୍ଚୟ ରହିବ । ଚନ୍ଦ୍ରଦିଆ ପଟା ପଥର... (ପାଣ୍ଡୁ ଗୁଲଗଲ) ଶଲୁହିଁ ସତ୍ୟ...(କନ୍ଧଆଡ଼କୁ ଯାଉ ଯାଉ ହାଡ଼ୁକୁ ଦେଖି ନିଜର ମନୋଭାବ ବଦଳାଇ) ବୁଝିଲୁ ହାଡ଼ୁ;ତୁମେ ସିନା

କେହି ଶୁଣିବନି ? ମୁଁ କହୁଛି ଏ କ'ଣ ସବୁଙ୍କ କାମ—
କୁଡ଼ କୁଡ଼ କଉଡ଼ର ବ୍ୟବସ୍ଥାଟିକ ?

ହାଡ଼ୁ—ତୁମେ ଭାଇ ପ୍ରଥମରୁତ ଏମିତି କହି ଆସୁଛ । ହେଲେ,
କାମଟା ତ ଆମରି ପାଇଁ, ନାଁ ନାଇଁ ?

ଶିବୁ—କଉ, ମୋର କ'ଣ ମନ ନାଇଁ ? କେଉଁ କାମରେ ମୁଁ
ଖେଳଗୁ କରୁଚ କହିଲ ? ହେଲେ ମତେ ନ ପଗୃରି ବଳ
ପାଇଁ ସପନାଟାକୁ ପଠେଇଦେଲ ! ପିଲା ଲୋକ – କ'ଣ
ନ କଲା ! କାମର ଛ'ମାସ ନ ପୂରୁଣୁ ହାତଟା ଭାଙ୍ଗିଦେଇ
ବସିଛି ଯେ, ପନ୍ଦର ଦିନ ହେଲା ମୋଡ଼ୀ ଦେଉଛି ।

ହାଡ଼ୁ—ଭାଂଗିଛି କେଉଁଠିମ ? ପଥର ପଡ଼ି ଟିକିଏ ତ ଜଖମ
ହୋଇ ଯାଇଛି । ତୁମେ ଥିଲ । ଗାଁରେ କଥା
ପଡ଼ିଲା—କିଏ ଯିବ, କିଏ ନେବ—ସବୁତ ବାପୁ ଠିକ୍
କରିବ ବୋଲି କଥା ହେଲା । ଆଜ ତା ଉପରେ ଦୋଷ
କାହିଁକି ଦେଉଛ କହିଲ ?

ଶିବୁ—କ'ଣ ମିଛରେ କହୁଛି ? ବାପଥିଲା ଦୁଅ ସଭାରେ ହାରେ ।
ହେଲେ ମୁଁ ତ ଅଛି—

ହାଡ଼ୁ—ବାପୁ ସପନାକୁ ତମଠୁଁ ବେଶୀ ଭଲପାଏ । ସେ ପଠେଇ
ନଥିବ । ସେମାନେ ଯାଇଥିଲା ବୋଲି ସମସ୍ତଙ୍କୁ କହିଛି ।

ଶିବୁ—ତା କହନ୍ତାନିକ ?

ହାଡ଼ୁ—ଗଲେ କ୍ଷତି କଣ ଯେ ? ମିଛଟା'ରେ···

ଶିବୁ—ହଁ, ମିଛଟାରେ– ସେଇ ଝନୁ ବୋହୂଟା ଗୁରୁ ପାଞ୍ଚ ମାସ ଛତରାଲଗା ହୋଇ ପଡ଼ିଲା ଯେ ଏବେ ମାଝେ ହେଲା ଉଠିଲା । ଫେର୍ ଉଠୁଉଠୁ କାମକୁ–ଗାଁ। ଗଣ୍ଡା ରହୁଛି କି ନାହିଁ ଦେଖ ।

ହାଡ଼ୁ—ତା' କହିଲ, ମୋର ଟିକିଏ ସନ୍ଦେହ ହେଉଛି । ଗୋଟିକ ପରେ ଗୋଟିଏ ଦୁର୍ଘଟଣା ଗୋଡ଼େଇଛି ବାପୁଙ୍କୁ । ସତରେ ତା ପରି କିଏ କରିବ ?

ଶିବୁ—ହଁ କରିବ ? ଜନ୍ମିଲା ପୁଅ ହୋଇଥିଲେ ଗୁଡ଼ି ଦେଇଥାନ୍ତା, ନୁହେଁ ? ଦୁର୍ଗା···ଦୁର୍ଗା···

ହାଡ଼ୁ—ତୁମେ କ'ଣ କହୁଛ? କିଏ ତ ବାହାରିଲେ ନାହିଁ । ପୁଣି ବାପୁଙ୍କର ତ ଇଚ୍ଛା ନଥିଲା । ପିଲାଟା ଜିଦ୍ ଧରି···

ଶିବୁ—ହଁ, ହଁ ସତ କହିଲ ହାଡ଼ୁ! ହଇହେ, ତମେ ସବୁ ବୁଝିଛତ ? ଗୁଡ—ଗୁଡ— କଥା କହିଲେ ଦୋଷ । ହଇରେ ଗଡରେ ଠାକୁରାଣୀ ଡାକୁଛି ? ହଉ, ଦେଖିବ ଯେ···(ଯାଉଥିଲା)

ହାଡ଼ୁ—ତେବେ ଭାଇ ଟିକିଏ ପୂଜା ପୂଜାର ବ୍ୟବସ୍ଥା କଲେ···

ଶିବୁ—ହଉ ଦେଖିବା । ସମସ୍ତେ କହିଲେ ସିନା ? ଆଉ କ'ଣ ମୁଁ ମନକୁ ଯାଇ···

(ଶଙ୍କୁ ଚାଲିଗଲେ । ହାଡ଼ୁ ଯାଜ ଯାଜ ପ୍ରବେଶ କଲେ କବ)

କବ—ହାଡ଼ୁ, ହାଡ଼ୁ; ଶୁଣ—ମୋର ଦୁର୍ଯୋଗ । ତୁମ ସହିତ ଏଠାକୁ ଆସି ଦେଖା ହେବାପରେ ମନରେ ଥିଲା ବାଞ୍ଛା ସହିତ କଥାବାର୍ତ୍ତା ହେବ ।

ହାଡ଼ୁ—ମହାପ୍ରଭୁ !

କବ—ଭାଗ୍ୟର ବିଡ଼ମ୍ବନା । କିଏ ଜାଣେ ଯେଉଁଥି ଲାଗି ବୁଲୁଛି ହାତ ପାଖକୁ ଆସି··· । କିଛୁ ଜାଣି ହେଉନି । ଏଣେ କର୍ମ ପାଗଳ ବାଇଧର ଚିନ୍ତାରେ ବ୍ୟାଘାତ ସୃଷ୍ଟି କରିବାକୁ ସାହସ କରୁନି । ଜନ୍ମତଃ ସେ ବ୍ରାହ୍ମଣ ନ ହେଲେ ମଧ୍ୟ କର୍ମତଃ ସେ ବ୍ରହ୍ମର୍ଷିଟିଏ··

ହାଡ଼ୁ—ତା କଥା କ'ଣ ? ହେଲେ ଯାହା କହେ ତାହା କରି ଦେଖାଏ ।

କବ—ତା' ମୁଁ ଜାଣେ ସିଂହେ ! ସ୍ୱାମୀ ସ୍ତ୍ରୀ ଉଭୟେ ଗୋଟିଏ ବୃନ୍ତରେ ଦୁଇଟି ଫୁଲ । କି ଅପୂର୍ବ ଯୋଗାଯୋଗ । କି ମାତୃସ୍ନେହ ! ତାଙ୍କର ଅସୁସ୍ଥତା ଭିତରେ ସପନା ସହିତ ଯାଇ ମୁଁ ଦେଖିଛି । ସେ ପିଲାଟି ଲାଗି···ସେ ପିଲାଟି କଥା କାହିଁକି ଆଜ କହୁଛ ? କି ବୁଦ୍ଧି ତାର···ପିଲାଟିବେଳୁ ତାର ଯେଉଁ ଭକ୍ତି, ସମ୍ମାନ···

ହାଡ଼ୁ—ତେବେ ଆପଣ କଣ···

କବି—ନାଁ ନାଁ ହାଡ଼ୁ ! ଭୁଲ ଗୁଣେ କୋଳ । ବାପା ମାଁ ତାର ପିଏ ହେଉ ପଛେ, ଏଭଳ ବାପ ମା'ଙ୍କ କୋଳରେ ବଢ଼ନ୍ତି ଯେତେବେଳେ, ଆଉ କେମିତି ହୁଅନ୍ତା···ମୁଁ ସେ କଥା କହୁଥିଲି ।

ହାଡ଼ୁ—ହଁ ସାଆନ୍ତେ ! ତାର କ'ଣ କମ୍ ବୁଦ୍ଧି ?

କବି—ଆଚ୍ଛା ଶିଂଢେ; କାମଦାମ କେମିତି ଗୃହଚ୍ଛି ?

ହାଡ଼ୁ—ମହାପ୍ରଭୁ

କବି—ଏଇ ବାଣ୍ଡ କାମ—

ହାଡ଼ୁ—ଶୁଣିଲେଣି ମହାପ୍ରଭୁ ! ମୋର ଯୋଉ ଉପରକୁ କାଗଜର ଆସିଛନ୍ତି ନା, ତାଙ୍କ କାରଗରରେ ଟିକାଏ ଖଇରୁ ରହୁଚି । କିନ୍ତୁ ଶିବୁ ହାଇତ···

କବି—ଖଇରୁ ନାହିଁ ବୋଲି କହୁଛନ୍ତି ନା ? ଆଚ୍ଛା ଏ ବିଷୟରେ ବାଇଧର ସ୍ପଷ୍ଟ ଶୁଣାଇ ଦେଲେ···

ହାଡ଼ୁ—ସେ ଶିବୁ ଭାଇଙ୍କୁ ଜନପଦ ବୋଲି ଭୟ କରେନି ସା'ନ୍ତେ ! ଶିବୁଦାଦା ବେଳ ଭୟକରେ । ଶିବୁ ଭାଇ ଏପରି କାଣ କାଣି କରି ପାରିବେ ସେ ବିଶ୍ୱାସ କରେନା—କହିଲେବି ଶୁଣେନା । କହେ—ଏତ ଏକ ରାତର ପରୀକ୍ଷା···

ଭବ—ଆଚ୍ଛା ସେ କଥା ବୁଝିବା ତେବେ । ପ୍ରକୃତରେ ସିଂହେ ଇଏ କ'ଣ ଗୋଟାଏ ଶ୍ରେଷ୍ଠ କାମ ହେଉଛନ୍ତି କି ? ଏତେ ବଡ଼ କାମ ହେବାକୁ ଯାଉଥିବା ବେଳେ ତାଙ୍କର ବିରୋଧ କରିବା ଅନ୍ୟାୟ ?

ହାଡ଼ୁ—ସାଆନ୍ତେତ ଅଛନ୍ତି । ସେଥିପାଇଁ ଆମର ଡର ନାହିଁ ସେ—ସା'ନ୍ତେ କାମଆଡେ ଟିକିଏ ଯିବେ ନାହିଁ ?

କବ—ହଁ ଗୃଲ ଆଗ ପୂର୍ବ ବାହ୍ମୀ କାମ ଦେଖି ଅସିବା' ପରେ କେତେବେଳେ ଆସି ସଭବ ହେଲେ ବାଇଧର ସହିତ ଟିକିଏ ଆଳାପ ଆଲୋଚନା କରିବ । •କାମତ ବେଶ୍ ଆଗେଇ ଗଲଣି । ଫେର୍ ତମେମାନେ ଅଛ ଯେତେ-ବେଳେ···

(କଥା ହୋଇ ହୋଇ ହୋଇ ଗୃଲିଗଲେ ଦୁହେଁ । ମଞ୍ଚରୁ କର୍ମ ସଂଗୀତ ଭାସି ଆସୁଛି—)

ସାଥୀରେ······ଭାଇରେ··
ଦିଗନ୍ତ ଛୁଇଁ ସୂର୍ଯ୍ୟ ଉଠେ
ରୋଷଣୀ ସଗେ ତମିର କଟେ
ଧରଣୀ ବକ୍ଷେ ପୁଲକ ଛୁଟେ
ଯାଆରେ······
କର୍ମ ରଥେ ସ୍ୱପ୍ନ ପଥେ
ଦିଗବଲପୁର ପାରେ······

ଏଇଯେ ମୁଖର କାକଳି ଛଡ଼ାଇ

ପକ୍ଷୀଯାଏ ଦୂରେ ଉଡ଼ି

ଏଇଯେ ସୂର୍ଯ୍ୟ ବନ୍ଧନହୀନ

ଶାନ୍ତ ଫୁଆରା ଧରି

ସୁପ୍ତ କଅଁରେ ତୃପ୍ତ ପବନେ

ସ୍ପନ୍ଦିତ କରି ଥରେ···

ସାଇରେ ·····ସାଥୀରେ·

(ଟିକକ ପରେ ପ୍ରବେଶ କଲା ବାପ୍ପା)

ବାପ୍ପା—ଆରେ'ପାତାଳ ! ଉପର୍ବୁ ମାଟି ଆଣେନେ । ଶକ୍ତି ନଷ୍ଟ ସମୟ ନଷ୍ଟ । ନଈ ବାଲି ବନ୍ଧରେ ପକେଇ ଦଖ । ସମ (ଡାକି) ଟିକିଏ ହାତ ଫୁର୍ତ୍ତି କର କେତେବେଳେ ପୁଣି ବଢ଼ି ମାଡ଼ି ଆସିବ । ଅରେ ହେ ଲଙ୍କା ! ଲଙ୍କା ! ଆରେ ତା ପାଖକୁ ପାଣି ନେଲ—ଆଲେ ମଙ୍ଗୁଳି ! (ଡାକି) ଲଙ୍କାକୁ ପାନ ଦେ' ସଞ୍ଜ ହୋଇ ଯାଉଛି । ମହେଶ୍ୱର, ତୁମ ସାହିର ଲୋକ ଉତ୍ତର ପଟ କାରିଗର୍ଙ୍କୁ ସାହାଯ୍ୟ କର ସେମାନେ ବିଶ୍ରାମ ନିଅନ୍ତୁ । (ସପନା ଆସିଛି । ହାତରେ ତାର କହାଳୀ ପଟୁକା ଘଟି) କିରେ ସପନା, ତୁ ପୁଣି ଆସିଲୁ ?

ସପନା—ନାଁ, ବାପ୍ପାଭାଇ ! ଘରେ ବସି ହେଉଛି କେଉଁଠି ? ମୁଁ ଦେଖୁଛି, ତୁମେ ଟିକିଏ ଶୋଇପଡ଼—

ବାପ୍ପା—ଯାଃ ପାଗଳ ତୁ ଟଳୁ । ହାତ ଫିଟିଲେ ଆସିବୁ ।

ସପନା— କାଲ୍‌ପଗ ଫିଟିବ । କ’ଣ ଅଛୁକ ଆଜ ? ମୁଁ ଟିକଏ ନୂଆଁଙ୍କ ପାଖରୁ ଆସେ । (ଚାଲିଗଲା)

(ବାୟୁ ପାଣି ପିଉଛି । ତାଳଗଛା ବଢ଼ାଇ ଦେଇଛି ଅନ୍ୟମନସ୍କ ଭାବେ । କାନ୍ଧ ଉପର ଦେଇ କବ ଆସିଛନ୍ତି । ସେ ହାତରୁ ତାଳ ନେଇ ରଖିଛନ୍ତି ଧିରେ ଧିରେ ବାୟୁକୁ ଛୁଇଁଛନ୍ତି ।)

ବାୟୁ—(ଚାହିଁ ଚମକି ପଡ଼ି) ଏଁ…କ’ଣ ହେଲା ? ସାଆନ୍ତେ ! କ୍ଷମା କରିବେ—

କବ— ତୁମ ମନରେ ଏ ଧାରଣା···

ବାୟୁ—ନାଁ, ନାଁ, ସାଂନ୍ତେ ! ଏ ସଂସ୍କାର ନୁହେଁ । କାମକୁ ଚଞ୍ଚଳ କରିବା ପାଇଁ ଆୟୁଧ ମାନ···

କବ—କାମ ! କାମତ ଜନମଯାକ ଚାଲିଛି । ଆସ, ଟିକଏ ଆଳାପ ଆଲୋଚନା କରିବା ।

ବାୟୁ—ଆପଣ ଏତେବେଳେ !

କବ—ମୋର ପୁଣି ବେଳ ଅବେଳ କ’ଣ ? ବୁଝିଲ ବାଇଧର ? ଲୋକେ କହୁଛନ୍ତି କୁଆଡେ ଦେବୀ ଡାକ ଦେଉଛନ୍ତି ?

ବାପ୍ପା—ସବୁ ମିଛ । ମିଛ ସାଆନ୍ତେ । ଲୋକଙ୍କ ମନର ଭ୍ରମ । ଏତେବଡ ଯାଗାରେ କାମ ଲଗିଛି । କେଉଁଠି କ'ଣ ଗୋଟାଏ ଶବ୍ଦ ହୋଇଗଲେ ତ ସେଇ ଛନକା ସମସ୍ତଙ୍କ ମନରେ ପଶି ଯାଉଛି । ନହେଲେ ଏଗୁଡ଼ାକ ଖାଲି କହିବା କଥାନା—

କବ—ହଁ, ଖାଲି ସେ ପିଲାଟି କଥା—

ବାପ୍ପା—(ବାପ୍ପା ଅନ୍ୟମନସ୍କ ହୋଇ ପଡ଼ିଲା । କଣ୍ଠ ସ୍ୱର ପରି-ବର୍ତ୍ତନ କରି) ଶୁଭ...ଶୁଭ ମୋର ଚୋର କରିବ· କାହିଁକି ? ସପନା କ'ଣ ମୋତେ ମିଛ କହିବ ? ଏଇ ହାତରେ ମୁଁ ତାକୁ ଗଢ଼ିଛି । ଛଅବର୍ଷ ମେହନତର କ'ଣ କିଛି ମୂଲ୍ୟ ନାହିଁ ସାଆନ୍ତେ ? ସେ ଓଲିବ··· ସେ ଚକ୍ରାର କରିବ ? ଯେ କେବେ ପ୍ରାଣ ରଙ୍କ ହୋଇ ପାରେନା । ଛଅ ବର୍ଷର ସାଧ ସାଧନା ତାକୁ ହାରୁ କରି ପା'ରେନା ସାଆନ୍ତେ । ସେ ବାର ପଣ ହସି ହସି ଠିଆହେଲା । ଟିକ ମୁଁହଟିରେ ତାର ସବୁବେଳେ ହସ । ଉଦାସ, ମଳିନତା କେବେହେଲେ ତା ମୁଁହରେ ଛାପ ପକାଇ ପାରିନି... (କହୁ କହୁ ଗୁଳି ଯାଉଥିଲା)

କବ—ତାକୁ ତମେ କୁଆଡ଼େ ନଈ ବଢ଼ିରୁ ଉଦ୍ଧାର କରିଥିବା କଥା ମୁଁ ଶୁଣିଛି !

ବାପ୍ପା—ହଁ ସାଆନ୍ତେ! ସେ ସାଲ ବଢ଼ି ଆସିଥିଲା । ରାତି ଅଧ ହେବ । ଅମାଉସିଆ ରାତି, କାଟି କାଟି ଅଂଧାର । ଉପରକୁ ଫେନ୍ଲୁ

ସେଠୁ ଡେଣ ହେଲ । ବଂଧରେ ବଂଧରେ ଆସି ପାର ହେଲ ବେଳକୁ ବୁଢାନ୍ତା ଗୁଳଟି ଆସି ଡଙ୍ଗାରେ ବାଜିଲା । ତାପରେ ଗୋଟାଏ ଶବ୍ଦ । ଡଙ୍ଗା ସେ ଧକ୍କାରେ ଘୁଅ ମୁଁହରେ ଘୂରି ଘୂରି ପୁଣି ତଳକୁ ଡ଼ାକେ ବାଟ ଠାଣି ହୋଇ ଗଲା । ବଂଚିବାର ଆଶା ଭରସା ମୋଟେ ନଥିଲା । ଡଙ୍ଗାଟି ଯେମିତ ଟିକଏ ଥଇଥାନ ହେଲା, ଛୁଆଟିଏ କାନ୍ଦି ଉଠିଲା । ଦଉଣ୍ଡି ଦଉଣ୍ଡି ଦେଖେତ କଅଁଳିଆ ଛୁଆ । ତା ପରେ ମୋରତ ପିଲ ପିଲ ନଥିଲେ, କାହାର ଛୁଆ ଜାଣିବାକୁ ବହୁଆଡ଼େ ଖବର ଅନ୍ତର ଦେଲି । କିଛି ପାଇଲିନି···

ଜଜ—ତା'ପରେ ?

ବାପ୍ପା—ତାପରେ ଆଉ କ'ଣ ? ସ୍ନେହରେ ଆମେ ତାକୁ କିଣିନୁ । ସେ କିନ୍ତୁ କିଣିନେଲା ଆମକୁ । ମୋର କଥା କହୁ ବୁଦ୍ଧିରେ ମୋତେ ବାନ୍ଧଦେଇ କୁଆଡେ ଗୁଳିଗଲା··

ଜଜ—ତା'ପରେ ?

ବାପ୍ପା—ତାପରେ···ତା ପରେ ଆଉ ଦେଖା ହୋଇନି । ମୋର ମନେ ହେଉଛି ସବୁବେଳେ ଯେମିତ କହୁଛି—ନ୍ୟାୟ ଧର୍ମର ଯୁଦ୍ଧ···ମୁଁ ତୁମ ପାଖେ ପାଖେ ଅଛି ବାପା—ଭିନ୍ନ ରୂପରେ···(କାନ୍ଦ ପକାଇଲା)

ଜଜ—ସତରେ ବାଇଧର ତୁମେ ମାର୍ଜିକ ନହେଲେ ବ ମନ ଜାଣ । ସେ ପିଲାଟି ଆଉ କାହାର ନୁହେଁ । ତମର ।

ତୁମେଇ ·ତାର ବାପା· · ·ଦଣ୍ଡେ ଗୁଡ଼ବାକୁ ଇଚ୍ଛା ହେଉନି ।

ବାପ୍ପା—ଆପଣ ସାଆନ୍ତେ ତାଙ୍କୁ ଦେଖିଛନ୍ତି ?

କବି—ନା, ନା, ସେମିତି କାହିଁକି ଭାବୁଛ ? ସେ ତୁମର । ଜନ୍ମ ଯେ ଦିଏ ସେ ବାପ ନୁହେଁ, ଜୀବନରେ ଜନ୍ମର ସାର୍ଥକତା ଯିଏ ଆଣେ ସେଇ ହେଉଛି ଜନ୍ମଦାତା ।

ବାପ୍ପା—ସାଆନ୍ତେ !

କବି—ଗୁଡ଼ । ଗଳ୍ପକଥା ଗଲଣି । ତୁମେ କିଛି ଭାବବନି । ତୁମେ ଦରବାରରେ ଯେଉଁ ଯୁକ୍ତି ଉପସ୍ଥାପିତ କରିଥିଲ—ଏକ ପକ୍ଷରେ ଗ୍ରାମର ସୁରକ୍ଷା, ଅନ୍ୟ ପକ୍ଷରେ ରାଜକୋଷ ବୃଦ୍ଧି, ସେଥିରେ ମୁଁ ସ୍ତମ୍ଭିଭୂତ ହୋଇଥିଲି । ମହାରାଜାଙ୍କୁ ମଧ୍ୟ ସ୍ପର୍ଶ କରିଥିଲା । ସେଇଥିଲାଗି ଟିକିଏ କଥାବାର୍ତ୍ତା ହେବାକୁ ଇଚ୍ଛାଥିଲା । କିନ୍ତୁ ତୁମ ପରିବାରରେ ଗୋଟିକ ପରେ ଗୋଟିଏ ଦୁଃଖ ଆଉ ତୁମର କର୍ମ ମୁଖର ଜୀବନ· · · ସାହସ କରି ନଥିଲି· · ·ଆସ, ଟିକିଏ ପଶ୍ଚିମ ବାପ୍ପା କାମ ଦେଖି ଆସିବା । ଏଠି ହାଉଡୁ ଅଛନ୍ତି· · ·

[ଦୁହେଁ ମଞ୍ଚରୁ ଗୁଲିଗଲେ । ଶ୍ରମ ସଂଗୀତ ଶୁଣାଯାଉଥିଲା ହଠାତ୍ "ପଥର ପଥର ପଡ଼ିଗଲା" ବୋଲି ପାଟି ତୁଣ୍ଡ ହେଲା । ନାରୀ କଣ୍ଠର ଚିତ୍କାର, ସପନା ପାଟିରୁ ଖୁବ୍ ଯୋରରେ ବାହାରି ଆସିଛି "ନୂଆ

ବୋଉ" ଟିକକ ପରେ ମଞ୍ଚ ଉପରେ ନଈ
ବଂଧରେ ଦେଖାଦେଲ ରକ୍ତାକ୍ତ ସପନା ।
"ବାପ୍ପାଭାଇ ବାପ୍ପାଭାଇ" ଡାକିଦେଇ ପୁଣି
ଫେରିଗଲ ବେଳକୁ ଲୋକ, ହାଡ଼ୁ ଆଉ
ଲୋକମାନେ ବଂଧ ଉପରକୁ ରକ୍ତାକ୍ତ ସରକୁ
ଟେକି ଆଣୁଛନ୍ତି । ମଞ୍ଚ ଅନ୍ଧକାର ଭିତରୁ
ଭାସି ଆସୁଛି ଏକ କରୁଣ ରାଗିଣୀ ।]

—:o:—

## ଦ୍ୱିତୀୟ ଦୃଶ୍ୟ—

[ବଡାନାସୀ ଗ୍ରାମର ଶେଷାଂଶ ପ୍ରାନ୍ତର । ଶିବୁ ଦାଦୀ ଧକ୍‌କାମାରି ପାଣୁକୁ ଆଣିଛନ୍ତି । ]

ଶିବୁ —କେଉଠା ଲୋକ ମାରିବୁ ବେ ଚଣ୍ଡାଳ !

ପାଣୁ—ସାଆନ୍ତେ ନିଜ ଆଖିକୁ କ'ଣ ପରତେ ଯିବନି । ସ୍ୱ ଚକ୍ଷୁରେ ଦେଖିଥିଲି, ବାପୁ! ସାଆନ୍ତେ ସେଇଠିଥିଲେ । ମୁଁ ଆସି ପଠା ପଥର ଦେଇ ପଠେଇଲି । ପଠା ପଥରଠାକୁ ଛେଚୁ ଲଇ ଦଉଡ଼ କେତେ ସଂଘାଳନ୍ତା···

ଶିବୁ – ସେଥିପାଇଁ ତୁ ଚଣ୍ଡାଳ ଏ ଅଘଟଣ ପରେ ଢମାସ ହେବ

ଲୁଚିଲୁ । ମୁଣ୍ଡରେ ବୁଦ୍ଧି ଥିଲେ ସିନା ଚଳିବ ।

ପାଣୁ—ସାଆନ୍ତେ ଧରମ ସନ୍ଧବନ ।

ଶିବୁ—ଚୁପ୍ ବେ, ଧରମ ସନ୍ଧବନ । ଅପଗଣ୍ଡ ସାତଦିନ ହେଲା ଆସିଲୁଣି···ମୋତେ ଲୁଚୁଚୁ କାହିଁକି ? କ'ଣ ? କ'ଣ ଘଟୁଚୁ । କଥାଟା ଫୁଟିଆସି ହେଇଚ ?

ପାଣୁ—ନାଁ । ସା'ନ୍ତେ ।

ଶିବୁ—ଚଣ୍ଡାଳ ଯେମିତି ଗଛ ସେମିତି ଆଣ୍ଡା । ହଇରେ ପାଣୁ ରାଜାଙ୍କ ପାଖରୁ ଠିକ୍ ଖବର ଯାଇଚୁ । ଦେଖ କ'ଣ ହେଉଚୁ । 'ଏମିତି ନହେଲେ ସେମିତି···

ପାଣୁ—ସତ ଯେ ସାଆ'ନ୍ତେ, ଲକ୍ଷ୍ମୀପର ସାଆନ୍ତାଣୀ···

ଶିବୁ—ଆହାହା···ଯୁଆଙ୍କୁ ବାଧିଗଲା । ଚଙ୍ଗୁଡ଼ ଚପିଲେ ମୁଣ୍ଡରେ ଗୁହ । ଆହେ ବୋହୂଟା ଖରାପ ବୋଲି ମୁଁ କହିଲି ? ବାପ୍ପା ତା କର୍ମଫଳ ଭୋଗୁଚୁ··· ଭୋଗିବ··· ହଉ ତୁ ଯା···(ପାଣୁ ଗଲାବେଳକୁ) ଆରେ ଶୁଣୁ ଶୁଣୁ । ତୋ କନିଆ କାହିଁକି କାମକୁ ଆସିବ? ନେ, ତାକୁ ଏ କଉଡ଼ି-ଟକ ଦେଇଦେବୁ । କିଛି ଚିନ୍ତା କରିନା । ସବୁ କଥାକୁ ଟିକଏ ଧ୍ୟାନ ଦେଇଥା । ଏ ଦେବୀ ପୂଜାରେ ସବୁ ହାତ-ହତିଆର ପୂଜାହେବ । ଗୋଟାଏ ଉତ୍ସବ କରିବା । ସବୁ ଟିକଏ ଲୋକଙ୍କୁ ଶୁଣାଇ ଦେବୁ ଯେ ସେ ଘଡ଼ିକେ ସହସ୍ର ଧ୍ୟାନ କରିଦେବ ।

ପାଣ୍ଡୁ—ଲୋକ ପାଆନ୍ତେତ !

ଶିବୁ—କଣ ଲୋକ ପାଆନ୍ତେ···

ପାଣ୍ଡୁ—କିଛୁ ଶୁଣୁ ନାହାନ୍ତି, ଓଲଟି

ଶିବୁ—ଓଲଟି, ଓଲଟି ତୋ ନାରେ କହୁଛୁ ?

ପାଣ୍ଡୁ—ପାଆନ୍ତିଙ୍କ ନାଁରେ···

ଶିବୁ—ମୋ ନାଁରେ । ଆଛା ଶୁଣ ପାଣ୍ଡୁ, ସବୁଆଡ଼ୁ ବାଟ ବନ୍ଦ କରି ଦେଉଛୁ । ମହାରାଜା ଆସିଗଲେଣି···ଏଣିକି···

ପାଣ୍ଡୁ—ମହାରାଜା ଆସିଲେଣି ?

ଶିବୁ—ଆଜି କଥା ଟେକା ନା ପଥର ହୋଇଛି ଯେ ମୁଁ ଯଜ୍ଞସ୍ଥଳ ଆଡ଼େ ଫୋପାଡ଼ ଦଅନ୍ତି ? ଚଣ୍ଡାଳ । ଯା କଥାଟାକୁ ନବୀରଖ (ପାଣ୍ଡୁ ଗ୍ଭଲିଗଲା) । ଉଦ୍‌ଯୋଗ କର୍ମକର୍ତ୍ତା ଦେଖାଯାଉ··· (ଦୂରରୁ ହାଡ଼ୁକୁ ଦେଖି ଡାକିଲେ) ଆରେ ହାଡ଼ୁ ! ଶୁଣୁ-ଶୁଣୁ, କ'ଣ ଆସୁଆସୁ ପୁଣି ଫେରି ଗ୍ଭଲି ଯାଉଥିଲୁ କାହିଁକି ?

ହାଡ଼ୁ—ପାଣି ତୋଳି ନାହିଁ ତଥାପି ସୁଅତ ଭାଙ୍ଗି ନେଉଛି । ବାପ୍ପା ପାଖକୁ ଯାଇଥିଲି ଯେ, ଆଜି ପଞ୍ଚଆମ୍ବା ଡ଼ାକିଲାନି ବୋଲି ହାତ ଏ ପର୍ଯ୍ୟନ୍ତ ଶେଯ ଛାଡ଼ିଲାନି···ସ୍ୱେଷ୍ଟରେ କେମିତି ତାକୁ କହିବୁ··

ଶିବୁ—ମୁଁ କହୁନି, ସୂତ୍ରୁବ ନୁହେ ଓଟ ବଇଁଶ .ମସ୍ ଉଠାନ୍ତୁ କଟିଏ ।
ଓମା, ମୁଦେଇ, କ'ଣ ହେଲ ? ଭଲ ମନରେ ସିନା ହୁ
ଭାଗ ଚନ୍ଦ୍ର ପଶୁର ଜଗୁଣ କାମ କଲେ··· । ନକର···
ତୁମେ ମରିବ । ସମସ୍ତଙ୍କୁ ମାରିବ । ସେହିନ ସେମିତ
ହୋଇଥା···

ହାଡୁ—ତୁମେତ ସବୁ ଜାଣିଚ । ଜାନ୍ତିମାରେ କାମ ଗୃହଥିଲ ।
ଏ ମେଢ଼ନାପୁରିଆ ପଟା ପଥରଟା ଅଟିଲ ବେଳକୁ କ'ଣ
ହେଲ ବାବୁ—ପଥରଟା ଖସିପଡ଼ ମାଟି ଧସି ହୋଇଚ
ଆସିଲ । ହୋଠୁ ଚଳେ ଥିଲେ··

ଶିବୁ—ନ ହେବା କଥା, ଛି, ଛି । ହଁ କ'ଣ ମହାରାଜା ଆସିଲେଣି
ବୋଲି ଶୁଣିଲି···

ହାଡୁ—ହଁ କେତେ ଲୋକଙ୍କୁ ତ ଡକେଇ ପଠେଇଛନ୍ତି । କ'ଣ
ଆଜ୍ଞା ହେଉଛୁ କେଜାଣି···

ଶିବୁ—ଶ୍ରୀ ମୁଖରୁ ଆଜ କ'ଣ ଆଜ୍ଞା ହେବ, ସମସ୍ତେ ଜୁଲିବୁ
ଯିବା । ଏ ଗୁଣ୍ଡା କଣ କାମ···

ହାଡୁ—ତୁମେ ଟିକେ ମହାରାଜାଙ୍କ ପାଖକୁ ଯାଇ ସବୁ ବୁଝେଇ
ଦେଦଲେ···

ଶିବୁ—ବୁଝା ସୁଝା, ତୁମେ ଚଣ୍ଡାଳ ମୋ ମୁହଁ କେଉଁଠି ରଖିଛ
ଯେ ମୁଁ ଯିବ । ଯାଉ ଯାଉ ସେ ବାସ୍ତୁ···

ହାଡୁ—ଯାହା କରୁଛ କର । ସପନାକୁ ତ କହୁଛ ଯିବାପାଇଁ···

ଶିବୁ···ହାଡ଼ ! ପୁଣି ସପନାକୁ ତା ପାଖକୁ ପଠାଇଛ । ବାପୁଆଟାତ ତା ମୁଣ୍ଡ ବିଗାଡ଼ ଦେଇଛି । ସେଥିରେ ତୁମେ ସମସ୍ତେ ମଥାଁକୁ ବଂଅ ଦେଉଛ···ନୁହେଁ ।

ହାଡୁ—ଏମିତ ଅସହଣିଆ କଥ ଗୁଡା ଭାଇ ତୁଣ୍ଡରେ ଧରନା, ବୁଝିଲ ଧର୍ମ ସମ୍ଭବନା (ଗୁଲଲୋ)

ଶିବୁ—ଧର୍ମ ସମ୍ଭବନା ନାଁ—ଦୁର୍ଗା ପୂଜାରେ ଦେବା ଭେଳକ ଲଗେଇ ଦେଉଛ । ଅଣ୍ଡିବ ପୁଅ ସବୁ । କାମ ବନ୍ଦ ହେବ । ବଡ଼ ପାଣି ସୁ ସୁ ମାଡ଼ ଆସିବ—ଖାଲି ବଂଧ ନୁହେ, ବାପୁଆର ଅଣ୍ଟା ଭାଙ୍ଗିଯିବ । ଏ ଗୁଣ୍ଡା ପୁଣି ସବୁ ମୋର ଗୋଡ଼ ଚଳକୁ···

(ଆଖିରେ ଝୁରତା—ମୁଁହଠରେ ହସ, ଶିବୁ ହସି ଉଠିଲେ—ମଂଚ ଅଂଧକାର ହେଲା)

—:୦:—

## ତୃତୀୟ ଦୃଶ୍ୟ

[ଚନ୍ଦ୍ର-ଶେଖର ଗଡ଼ । ସର ବାପ୍ପା ଗୋଡ଼ରେ ମୁଣ୍ଡ ରଖି ଶୋଇଛୁ । ବାପ୍ପାର ପୃଷ୍ଠ କଣ୍ଟିତ ଖର ]

ସର—ଆସି ଛ ମାସ ହୋଇଗଲା । ତୁମେ କାମ ଉପରକୁ ଯାଉନ । ସପନା ପିଲଲୋକ । ବାଂଧ ଲୁହଥାରେ ରକ୍ତଚନ୍ଦ୍ର; ଅଥଚ—

ବାପ୍ପା—କାହା ଲାଗି କୌଣସି କଥା ଅଟକି ରହେନା ସର, କାମ ହେଉଚ, ହେବ । ହେଲେ ତୁମ କାମ କରିବାକୁ ତ ସମସ୍ତ ଅପେକ୍ଷା କରିବେନି ।

ସର—ଏଇଆ ସଗ୍ୟଙ୍କର ଥିଲା । ତୁମେ ପୁଣି ମୋ କାମ କରିବ ? ମୁଁ ପିନା ତୁମ କାମ କରି କରି ଜୀବନ ସାରି ଦେଇଥା'ନ୍ତି ।

ବାପୁ୍ୱା—ସର ! ତୁମେ ମୋ ଭିତରେ ପାର୍ଥକ୍ୟ କେଉଁଠି କହିଲ?

ସର—ତୁମେ ଯାହା କୁହ—ଜନ୍ମ ଜନ୍ମ ଧରି ମୁଁ ତୁମର ସେବକୀ ହୋଇ ଜନ୍ମ ହୁଏ । କିନ୍ତୁ ମୋ ପରି ଭାଗ୍ୟ ହୀନା···

ବାପୁ୍ୱା—ତୁମେ ଭାଗ୍ୟ ହୀନା ନୁହଁ ସର ! ତୁମେଇ ମୋତେ ଚଞ୍ଚଳ କରିଛ । ତୁମେଇ ଆଗେଇ ଯିବାର···

ସର—ନାଁ, ନାଁ । ମୁଁ କ'ଣ କରିଛି ? ନାରୀ ହୋଇ କୁଳରକ୍ଷା କରି ପାରିନି । ସ୍ତ୍ରୀ ହୋଇ ସେବା କରି ପାରିନି । ଆଉ ଆଜି ଅଚଳ ହୋଇ ତୁମ ଚିନ୍ତାରେ ତୁମ କର୍ତ୍ତବ୍ୟରେ ବାଧା ସୃଷ୍ଟି କରୁଛି । ପୂର୍ବ ଜନ୍ମର କୃତ କର୍ମରୁ ମୋର ଗୋଟାଏ ଅଂଗ ଅଚଳ ହୋଇ ଯାଇଛି । ଆଉ ତୁମେ ··

ବାପୁ୍ୱା—ଦୁଃଖ କ'ଣ ଏଥିରେ ସର ? ବାହାର ସୌନ୍ଦର୍ଯ୍ୟ ମଉଳି ଯାଇ ପ୍ରକୃତ ସୌନ୍ଦର୍ଯ୍ୟ ବଢ଼ି ଉଠିଛି । ତୁମେ ତ ଚଳ ପ୍ରଚଳ କରି ପାରିଲଣି । ତୁମର ଦେହଦଶା ଲାଗି ଯଦି ଦରକାର ପଡ଼େ ମୁଁ ଗଂଧମାଦନ ଉଠାଇ ଆଣିବି । ଏଥିଲାଗି ଏତେ ଚିନ୍ତା—ଏତେ ମନସ୍ତାପ ?

ସର—ମୋର ମନସ୍ତାପ ? କାହିଁକି ? ଯେଉଁ ଗର୍ବ ଟିକକ ଲାଗି ବ୍ୟବଧାନ ଥିଲା ତା ଆଜିତ ଦୂରେଇ ଯାଇଛି । ତୁମେ

ଆଉମୂ — ମୁଁ ଆଉ ତୁମେ । ଉପରେ ଆକାଶରେ ପୁନେଇଁ ଜହ୍ନ । ତୁମ କୋଳରେ ମୁଣ୍ଡ ରଖି ଯଦି ଏଇଲେ ମରିଯାଏ...

ବାପ୍ପା — ସର! ସେମିତ ହେଲେ ବାପ୍ପାର ଖେଳା ବୁଡ଼ିଯିବ । ବାପ୍ପା ଭୁଲିଯିବ ତା'ର ଅସ୍ତିତ୍ୱ ।

ସର — ନା, ନା, ଏ ସାଧନା ପୀଠରେ ତୁମର ଚନ୍ତାକୁ ଏକମୁଖୀ କରିବାକୁ ହେବ । ତା' ନହେଲେ ମୁଁ ଧର୍ମପତ୍ନୀର ଗୌରବରୁ ବଂଚିତ ହେବି । ଅର୍ଦ୍ଧାଙ୍ଗିନୀ ଆଦର୍ଶରୁ ଚ୍ୟୁତା ହେବି । ତୁମେ କିଛି ଭାବନା । ମୁଁ ତ ଖୁବ୍ ଭଲ ଅଛି । ଖୁବ୍ ଖୁସିରେ ଅଛି । ଏଣିକି ତୁମେ ଯାଅ । କାମ ଉପରକୁ ଯାଇ ଦେଖ । କଥା ଓ କାମରେ ଯେମିତ ପାର୍ଥକ୍ୟ ନରହେ ।

ବାପ୍ପା — ସର...

ସର — ନାଁ । କିଛି ଶୁଣିବିନି । ଚାଲ ଆଜି ଡେରି କରନା । ଆଜି କୋଡ଼ି କୋଦାଳ ଲହଣ ଧରି ପାରିବିନି ସତ । ପାଣି, ମାଟି, ପଥର ସ୍ପର୍ଶ ପାଇଁ ଏ ଦେହ ଅପାରଗ ହେଲେ ବି, ମୋ' ମନ ନୁହେଁ । ମୁଁ ଗାଇବି ସେଇ ଗୀତ...ସୃଷ୍ଟିର ଜୟଗାନ କରୁ କରୁ ତୁମେ...

(ଉଠିଲା ବେଳକୁ ଉଠି ନ ପାରିବାରୁ ବାପ୍ପା ଧରିପକାଇ)

ବାପ୍ପା — ସର...ଆଉ ତୁମକୁ ଛାଡ଼ିବାକୁ ଇଚ୍ଛା ହେଉନି ସର...

ସର···କ'ଣ କହୁଛ ? ଇଚ୍ଛା ହେଉନି ? କାହିଁକି—ମୋର କ'ଣ ହୋଇଛି କି ? ମୁଁ ବୁଝି ପାରୁନି ତୁମେ କାହିଁକି ଭୁଲି ଯାଉଛ ମହାବଳୀଙ୍କ ଆଗରେ କଥା ଦେଇଛ—ତୁମେ କାହିଁକି ଭୁଲିଯାଉଛ ଏ ଅଞ୍ଚଳର ଲୋକଙ୍କୁ ତୁମେ ସେପରି ଏଥିଲାଗି ଉତ୍ତେଜିତ କରିଛ— ତୁମେ କାହିଁକି ଭୁଲି ଯାଉଛ ଗଡ ପାହିଲେ ପୁଣି ବଢ଼ି ଆସିବ । କିଛି ନ ହେଲେ ପୁଛିଯିବ ଦାଉ···ପୁଣି ସେଇ··

ବାପ୍ପା—ଏର !

ସର—ହୁଁ ସତ (କାନ୍ଦ ପକାଇ)··ତୁମେ କେମିତି ଭୁଲି ଯାଉଛ ମା' କୋଳରୁ ତା' ପିଲାକୁ ଛଡ଼ାଇ ନେଇ ଆଖି ବୁଜି ହୋଇ ବସିଛ ? ସେ ଦିନ ଶୁଭ ମୋର କେମିତି ଶୁଣିଲେ ଦେଖିଲ ? (ଦୂରରୁ ସପନାର ଡାକ ଶୁଭୁଛି—ବାପୁ'ଇ ହେ ! ··) ଦେଖ ସପନା କାହିଁ ଆଉ ଡାକୁ-ଛନ୍ତି···ତୁମେ ଯାଅ···ଯାଅ—ମୋ ଶୁଭର ଆତ୍ମା ଦେଖୁଥିବ···ସେ ହେବେ ଶାନ୍ତି ପାଉ—ଯାଅ । (ବାପ୍ପା ଉଠି ଯାଇଛି—ସର ଏକ ଲୟରେ ଗୁହାଁଳି-ଦୂରରୁ ସେଇ ଗ୍ରାମ ସଂଗୀତ ଭାସି ଆସୁଛି । ଗୀତ ସରିଲା ବେଳକୁ ସପନା ପହଂଚ)

ସପନା—ନୂଆଁ ବୋଉ ! କ'ଣ ଖୁଣ୍ଟଟାଏ ଭଳି ଠିଆ ହୋଇଛ ?

ସର—(ଲୁହ ପୋଛି, ବୁଲି ଚାହିଁ) ଆଉ କ'ଣ କରି ପାରିବ ସପନା ?

ସପନା—ବାପ୍ପା'ଇ ?

ସର—ଗଲେ—ତୁମେ ଦେଖିଲନ ?

ସପନା—ବପ୍ପା'ଇ ଗଲେ ? ଆଜ ତେବେ କ'ଣ ଅଛି ?

ସର—ତାଇଁ କ'ଣ ହେଲକ ?

ସପନା—ନାଇପେ, ବୃନ୍ଦଜର ମୂଳଝା ଜସ୍ମା ରହୁନ । ବହୁତ ଚେଷ୍ଟା କଲୁ । ବାପ୍ପା'ଇ ଖାଲ ଦେଖିଲେ କହିଦେଇ ଫଳେଇ ଆସିବେ ଯେ—

ସର—ଫଳେଇ ଆସିବେ ? କାହିଁକ ? ତାଙ୍କୁ ରହି କାମ ସାରିବାକୁ ହେବ ।

ସପନା—ବାପ୍ପା'ଇ କାମ ଉପରେ ରହିବେ ନୂଆ'ଜ ? (ବହୋର ହୋଇ) ସତେ···ସତେ ନୂଆ'ଜ । ତୁମେ ଭାରି ସୁନ୍ଦର··· (ଗୃଳ ଯାଉଥିଲା)

ସର—ସପନୀ, ଅଛା ଆଜିଯାଏଁ କଣ ଜାଣୁ ନଥିଲ ନା ?

ସପନା—କାହିଁକ ନୂଆ'ଜ—ମୋ କଥାରେ କ'ଣ କେଉଁଠି ଭୁଲ ରହିଗଲ ? ତୁମେ କହିଦଅ ମୁଁ ତା ଠିକ୍ କରିଦେବ ।

ସର—କ'ଣ ମୋ' ଭୁଲ ଦେଖି ଏପରି କହୁଲ ?

ସପନା —ନୂଆଁଜ, ଆଜଯାଏଁ ତୁମେ ମୋ ଆଖିରେ ସୁନ୍ଦର ଥିଲ, ହେଲେ ଆଜ ଖାଲି ସୁନ୍ଦର ନୁହେଁ, ଏମିତ ସୁନ୍ଦର ଯାହାର ଷପ୍ନ ଷତ କିଛି ନାହିଁ। ମୁଁ ଯାଉଛି ନୂଆଁଜ ମୋ କଥା ଓ ଭାବନା ଗୋଟାଏ। ମୁଁ ବାପୁଆଁଇର ଝିଅ। ତୁମେ ମୋର ମା'··· (ମଂଚ ଅନ୍ଧାର ହୁଏ)

—:0:—

## ଚତୁର୍ଥ ଦୃଶ୍ୟ

[ଶିବିରର ବହିର୍ଭାଗ । ଅଦୂରରେ ନଦୀ । ଏକ କ୍ଷୁଦ୍ର ଜଳଧାର, ଅସଂଖ୍ୟ ସ୍ରୋତର ସୃଷ୍ଟି କରି ଛନ୍ଦାୟିତ ଗତିରେ ବହି ଚାଲିଛି । ସକଳ କେଉଁଠି ସ୍ଥିର, ଶାନ୍ତଳ । କବି ମଧ୍ୟ, ଉଭୟେ ଦଣ୍ଡାୟମାନ ।

କବି – ପରମ ମାହେଶ୍ୱର ପରମ ଭଟ୍ଟାରକ···ଆଦେଶ ହେଲେ—

ରାଜା – ନାଁ । ନାଁ । କବି ! ଏ ଜନପଦରେ ଅଭିନନ୍ଦନ ନିଷ୍ପ୍ରୟୋଜନ । କମୂହୂର୍ତ୍ତରେ ସେ ବାଇଧର ସନ୍ନିହତ ସାକ୍ଷାତ୍ ହେଲା କେଜାଣି ସଚିବମାନଙ୍କର ବିନା ପରାମର୍ଶରେ ମୁଁ ଏ ବିରାଟ ଯୋଜନା ଗ୍ରହଣ କଲି । ସଦସ୍ୟମାନେ ବିମୁଖ—କର୍ମଗୁରୀମାନେ

ବାଚସ୍ପତି—ଜନପଦମାନେ ଠିକ୍ ସେତେବେଳର ଘଟଣା ପରେ ଆଜି ବି ଅସ୍ପଷ୍ଟ । ବିଫଳତାର କର୍ମପ୍ରତୀକ ଏ ପ୍ରଚେଷ୍ଟା । ତଥାପି ଦ୍ୱିତୀୟବାର ନିର୍ମାଣର ଅନୁଷ୍ଠ ହେଲ, କିନ୍ତୁ···

କବି—ମହିମା ମଧ୍ୟ ସଚେତ ଥିଲେ···

ରାଜା—ଅସ୍ୱୀକାର କରୁନି । କିନ୍ତୁ ହେଲା କଣ ? ରାଜକୋଷର ଅଜସ୍ର ଅର୍ଥ ନଦୀ ସ୍ରୋତରେ ସମୁଦ୍ର ଗର୍ଭରେ ବାରମ୍ବାର ପଡ଼େ । ଅଯଥା ସରକାନ୍ତ ଦ୍ୱୟ ଶାସନ ।

କବି—ପ୍ରମୁଖଙ୍କ ସଙ୍ଗତ ମୁଁ ଏକମତ ନ ହୋଇ ମାର୍ଜନା ଚାହେଁ— ପ୍ରଚେଷ୍ଟା ବିଫଳ ହୋଇଛି ନିଶ୍ଚୟ, କିନ୍ତୁ ଅର୍ଥର ଅନର୍ଥକ ବ୍ୟବହାର ହେଉନି ।

ରାଜା—ଅର୍ଥନୀତି ବିଷୟରେ ଏକମତ କବି ନୁହଁନ୍ତି!

କବି—ଅଜସ୍ର ଅର୍ଥର ବିନିଯୋଗ କପଟ ହୋଇଛି—ଦୂରଦୃଷ୍ଟି ମଣ୍ଡଳ ପ୍ରମୁଖ ବିବେଚନା କରି ନାହାନ୍ତି । ଏ ଅଂଚଳ ତଥା ଭିନ୍ନ ଅଂଚଳ ଲୋକମାନଙ୍କର ଅର୍ଥନୈତିକ ସ୍ଥିତିର ଅତୀତ ଓ ବର୍ତ୍ତମାନ ପ୍ରତି··

ରାଜା—ତା' ପରେ ଏକାନ୍ତ କାମ୍ୟ ତେବେ ଅର୍ଥ ମୁକ୍ତ ହସ୍ତରେ ବଣ୍ଟନ କରାଗଲେ···

କବି—ମହାରାଜ ! ଶାସକ କେବଳ ରାଜକୋଷର ରକ୍ଷକ ନୁହେଁ, ପ୍ରକୃଷ୍ଟ ପ୍ରଯୁକ୍ତିବାଦୀ । ରାଜ୍ୟର ପ୍ରକୃତ ରାଜକୋଷ ଦେଶର ମାଟି, ପାହାଡ଼, ବନପର୍ବତ, ନିର୍ଝର ନଦୀ, କଳା, କୃଷ୍ଟି ସର୍ବୋପରି ପ୍ରଜାଙ୍କ ନିଷ୍ଠା ଓ ଉତ୍ସାହ । ଏ ସବୁ ଦୃଷ୍ଟିରୁ ଏଠାର ପ୍ରତିଚେଷ୍ଟା ରାଜ୍ୟର ମୂଲ୍ୟବାନ ସଂପତ୍ତି ବୋଲି ମହାରାଜ କ'ଣ ଅସ୍ୱୀକାର କରିବେ ? ମହାରାଜ କ'ଣ ସ୍ୱୀକାର କରିବେନି ଶ୍ରମ ଓ ସାଧନାର ରକ୍ଷକ ଶାସକ ବୋଲି ? ପରୀକ୍ଷା ନିରୀକ୍ଷାରେ ଜ୍ଞାନ ପରିମାର୍ଜିତ ହୁଏ । ଏକଥା ଆପଣଙ୍କ ଅଗୋଚରରେ ନଥିବ...

ରାଜା—ବର୍ତ୍ତମାନ ଏହା ଉପଲବ୍ଧି କରିବାରେ ମୁଁ ଅକ୍ଷମ...

କବି—ପ୍ରଭୁଙ୍କର ଅବବୋଧ ପାଇଁ ଏଇତ ବର୍ତ୍ତମାନ ବାଇଧର ଆସିବ ।

(ବାଇଧର ଠିକ୍ ଆସି ପହଂଚନ୍ତି । କୋଟରଗତ ଚକ୍ଷୁ । ଦୀର୍ଘ ସ୍ମଶ୍ରୁ ।)

ରାଜା—ନା, ନା, କବି ! କାହିଁକି କଏ ଆସିବ ? ଆଦର୍ଶ ଯୋଜନାର ପ୍ରହସନ ଭିତରେ ମୋତେ ଏକାକୀ ରହିବାକୁ ଦିଅ । ମୋତେ ଭାବିବାକୁ ସମୟ ଦିଅ—ମୁଁ କାହିଁକି...କାହିଁକି ଏକ ବ୍ୟର୍ଥ ବିଫଳ ଯୋଜନାକୁ ଦ୍ୱିତୀୟ ବାର ହାତକୁ ନେଲି ?

ବାସ୍ତୁ—ଅବଶ୍ୟ ନୁହେଁ ପ୍ରଭୁ ! ପ୍ରଭୁଙ୍କର ବ୍ୟସ୍ତତା ଲାଗି ଏ ଦୀନ ପ୍ରଜାକୁ ଦଣ୍ଡିତ କରନ୍ତୁ । ଚେଷ୍ଟାରେ ତ୍ରୁଟି ଥିଲେ

ଶାସ୍ତ୍ରକ ଭାବେ ବନ୍ଧିତ ବ୍ୟବସ୍ଥା କରନ୍ତୁ । କିନ୍ତୁ ଯୋଜନା ବିଫଳ ବୋଲି ମନରେ ସ୍ଥାନ ନପାଉ । ସେ ଦୃଷ୍ଟିରୁ ବରଂ ମୋତେ··· ପରିକଳ୍ପନାରେ ବିଫଳତା ନାହିଁ ସ୍ୱାମୀ···

ରାଜା—ତୁମେ ଚାଲିଯ ଅ ଚାଲିଯାଅ ବାଇଧର···

ବାସୁ—ଶେଷ ଚେଷ୍ଟା କରୁଛି ସ୍ୱାମୀ ! ଗୋଟିଏ ମାତ୍ର ମାସ···

ରାଜା—ବେଶ୍, ବେଶ୍, ବେଶ୍ ! ବୋଇତ-ବନ୍ଦାଣ ପୂର୍ଣ୍ଣିମାହିଁ ତୁମପାଇଁ ଶେଷ ଦିନ । ଦୁଇ ପକ୍ଷରୁ ଅଧିକ ରହିଛି । ନଚେତ୍··

ବାସୁ—ଧନ୍ୟ ଗ୍ରହଣୀୟ ମହାରାଜ ! (ବାସୁ ଧୀରେ ଧୀରେ ଚାଲିଗଲା, ରାଜା ପଦଚାରଣ କରୁଛନ୍ତି)

ରାଜା—କବି ! କେବେ ତୁମେ ଶୁଣାଇଥିଲ ମଧୁର ତୁମର ଆଂଚଳିକ ସଂଗୀତ···ଆଜିଥରେ ଶୁଣାଅ —

କବି—ଦରବାର ଅନୁମତି ମିଳିନଥିଲା···(ରାଜାଙ୍କ ନୀରବତାଦେଖି) କେତୋଟି ଦିନରେ ସ୍ୱାମୀଙ୍କୁ ସାଂନିଧ ରାଜକୀୟ ନୀତି, ନିୟମ ଜାଣିବାକୁ ବାଧ୍ୟ କରିଛି । କ୍ଷମା କରିବେ । ନ କହି ମୁଁ ଭୁଲ କରିବି ଜାଣିଲେ ମଧ୍ୟ ସମସ୍ତ କଥା କହି ପାରୁନି । ଆବଶ୍ୟକ ବେଳେ ପ୍ରକାଶ କରିବି ।

ରାଜା—ସ୍ପଷ୍ଟ କୁହ କବି—

କବ—ମହାରାଜ ଉତ୍ତର ଓ ପଶ୍ଚିମରୁ ଆସିଥିବା ଶିଳା ଶିଳ୍ପୀ ଏଠାକାର ଜନପଦଙ୍କ ସହ ଷଡ଼ଯନ୍ତ୍ରରେ ଲିପ୍ତ । ସ୍ୱାର୍ଥ ଭିତରେ ବ୍ୟକ୍ତିଗତ ଈର୍ଷା···

ରଜା—ବ୍ୟକ୍ତିଗତ ?

କବ—ପ୍ରଭୁ ଜାଣିନାହାନ୍ତି ବୋଧହୁଏ, ଏ ଜନପଦର ପ୍ରକୃତ ଜନପତି ବାଇଧର—

ରଜା—ବାଇଧର ଜନପତି !

କବ—ହଁ ପ୍ରଭୁ । ବାଇଧର ଜନପତି । ସ୍ୱେ ଏମାନର ସେ କୃତ୍ୟରତା ମଙ୍ଗଳା ବାଇଧରର ଧର୍ମପତ୍ନୀ । ହେଲେ ପ୍ରଭୁ, ବାଇଧର ତାର ଦାଦାଙ୍କୁ ସବୁ କ୍ଷମତା ହସ୍ତାନ୍ତର କରିଛି । ତଥାପି ତାଙ୍କ ଦାଦାଙ୍କ ଅପାରଗତା, ମନରେ ଭୟ ତାଙ୍କୁ ଶଙ୍କାକୁଳିତ କରିଛି । କିନ୍ତୁ ଜନପଦର ଅଗାଧ ସ୍ନେହ, ସପନାର ମମତା ବାସ୍ତୁର ସାଞ୍ଜୁ ମହାରାଜ । ତେଣୁ କେହି ତାର ଦୈହିକ କ୍ଷତି କରି ନପାରି ଏଭଳି ଭାବେ ଲାଂଛିତ କରାଇ··

ରଜା—ବୁଝିଲି । ଏ ଖବର ପାଇଥିଲେ ମଧ୍ୟ ଧ୍ୟାନ ଦେଇ ନଥିଲି । କାରଣ ମୁଁ ଜାଣେ ବାଇଧର କେବେ···

କବ—ସେଇତ ବ୍ୟକ୍ତିର ବ୍ୟକ୍ତିତ୍ୱ ପ୍ରଭୁ ! ବାଇଧର ରାଜଶକ୍ତିକୁ ବିଶ୍ୱାସ କରେ । ସମ୍ମାନ ଜଣାଏ । ହେଲେ ଅନୁଗ୍ରହକୁ ଅପେକ୍ଷା କରେନି । ଦେଖିଲେନି ପ୍ରଭୁ ! ସ୍ୱପ୍ନିଳ

ପରିବେଶରେ ସ୍ୱପ୍ନପ୍ରବଣ ଲୋକଙ୍କର ଚକ୍ଷୁ ତାଙ୍କ କୋଟରଗତ ? ଦୀର୍ଘ ଛ ମାସ ହେବ ଆହାର ତନ୍ଦ୍ରା ପରିତ୍ୟାଗ କରି···

ରାଜା — କବି !

କବି — ମୁଁ ବାଉଳର ପକ୍ଷ ସମର୍ଥନ କରୁନା ପ୍ରଭୁ ! ଏଥର ଅନୁ-ସଂଧାନ କରନ୍ତୁ—ଦେଖିବେ ତାର ଅନୁସଂଧିତ୍ସା···

ରାଜା—ଈଶ୍ୱର କରି ଦେଖିବା କବି ! (ରାଜା ଚାଲିଗଲେ । ରାଜାଙ୍କୁ ଚାହିଁ କବି ମଧ୍ୟ ଚାଲିଗଲେ)

—:୦:—

# ପଞ୍ଚମ ଦୃଶ୍ୟ

[ସେଇ ବରଗଛ ତଳତଳ । ସଂଧ୍ୟା ହୋଇ ଆସୁଛି । ପଞ୍ଚମୀର ଚନ୍ଦ୍ର । ବନ୍ଧୁର ଖଣ୍ଡିତ ନମୁନାକୁ ଏପଟ ସେପଟ କରି ବାୟୁ ପରୀକ୍ଷା କରି ଗ୍ଲୁଲିଲ । କେତେବେଳେ ଇଠାଟିଏ ରଖୁଚି—ହାତତାର ଜେଦ୍ମାକୁ—ତା ମନର ଚନ୍ଦନ—

ମାଇକ୍‌ରୁ ଭାସିଆସୁଛି···"ଜନପଦର ଆଶା ଆକାଂକ୍ଷା ବିପର୍ଯ୍ୟସ୍ତ ହୋଇଛି । କି-ଭୀଷଣ କି ଭୟଂକର ବେଦନା· ରାଜାଠାରୁ ପ୍ରଜା, ବାଳକଠାରୁ ବୃଦ୍ଧ । ସତେ ଯେପରି

ବ୍ୟର୍ଥତା ବିଫଳତାର-ରୂପାୟନ···ହେଲେ
ବାଇଧର,ବଡ଼ାନାସୀର ମସ୍ତମ ବାଇଧର···
ଚିନ୍ତା କୁଂଚିତ କପାଳ ବାଇଧର···ସତ୍ତ
ଋତର ସାଧକ ବାଇଧର···ଚେଷ୍ଟା ତାର
ଅସ୍ପରନ୍ତ· ଆଶା ତାର ଅନନ୍ତ" ।
ଘୋଷଣାର କିଛୁକ୍ଷଣ ପରେ ପ୍ରବେଶ କରନ୍ତି
ସର । ହାତରେ ତାର ଗିଲସେ ପଣା ।
ବାପୁଙ୍କୁ ଲକ୍ଷ୍ୟ କରି...]

ସର—ତୁମ୍ୱଂ କ'ଣ ଆଣିଛଲେ···

ବାପୁ—ଏଁ···

ସର—ମହାଶୟ କଣ କହୁଲେ ?

ବାପୁ—ଏ କାମ ସାରିବାକୁ ହେବ । ସବୁତ ସରିଛି ଖାଲି ଏଇ ବୁଲୁକ ଉଇଠା । ଘବୁଟି ଅଷ୍ଟମୀ ପୂର୍ବରୁ ସରିପିବ··· ପାଣି ଧଡ଼େ଼୍ର ଛୁଡ଼ିଗଲେ ଖାଲି ମୂଳକୁ ଆଠା··

ସର—ସେମିତ ସେ ଅଧାବୁରୁଜରେ କେଶ୍ନ ପଶିଲେନି ଯେ ସୁଅ ଚୋଡ଼ ସହ୍ଲ ଗୁଡ଼ଏ ଗୁଡ଼ଏ ପାଣିରେ ବୁଡ଼ ରହୁ କାମ ଶେଷକଲ । ପାଣି ନ ଛୁଡ଼ିଲେ ଆଉ ସାଲକୁ ହେବ···

ବାପୁ—ଆଉ ସାଲ ।

ସର—ହଁ (ବାପ୍ପାର ନୀରବତା ଦେଖି) କାହିଁକି ପୁଞ୍ଜି କ'ଣ ସୁଅରେ ଭସୁ ଅଛି ?

ବାପ୍ପା—ନାଁ ନାଁ ସର । ଏଥର ଏ ବର୍ଷ ସୁଅରେ ଖେଳି ହୋଇ-ଯିବନି—ସୁଅକୁ ପେଲିଦେବ । ସବୁ ମୋର ଆଉ ତାଙ୍କ କାମ ଦେଖିଲେ ମାଟେ ପରଣ କରନ୍ତୁ

ସର—ଓଟେ ଥାଉ, ପାଣି ଛୁଟିଲେ କାମ ହେବ...

ବାପ୍ପା—ମହାରାଜାଙ୍କୁ କଥା ଦେଇ ଆସିଛି ଏଇ ପୂର୍ଣ୍ଣିମା ପୂର୍ବରୁ ସବୁ କାମ ସରିବ ।

ସର—ଆଜିତ ପଞ୍ଚମୀ ହେଲା । ଉତ୍ତରଣ କାରିଗର ତ ଗଲେଣି । ଏଣିକି ଏମାନଙ୍କୁ ଛୁଟି । ସପ୍ତମୀ ଦିନଠୁ ପୂଜା ଆରମ୍ଭ ହେବ । ଭଲ ମନ୍ଦ କିଏ ଜାଣି...

ବାପ୍ପା—ଏ କ'ଣ କହ ପୂଜା ସର ! ହଁ ତୁମେ ଗଲାବେଳେ ମୂଳ ମାଉଡ଼ ପଟା ପଥର ପାଇଁ ସପନାକୁ କହିଦେଇ ଯିବ.. ନ ହେଲେ ତାକୁ ମୋ ପାଖକୁ ପଠେଇ ଦେଇ—

ସର—ଏଇ ବୁଝିଲି । ଦେବୀ ପୂଜାରେ କିଏ କାମ କରେ । ମନ୍ଦିରେ ଦନୁଠାଏ । ସବୁ ବସିବ...

ବାପ୍ପା—ବସିବ ସର । ଦେବୀର ପୁଣି ପୂଜା ହେବନି । (ସର ଅନ୍ୟମନସ୍କ ହୋଇ ପଡ଼ୁଛି । ତା ମନକୁ କିଛି ଶଙ୍କିତ

କରୁଛି) ମୋର ଆଶା କାମନା ପଥର ହୋଇ ସୁଦ୍ଧା ସବୁ
ଯିବ ! (ସର ଝୁଲାଉ ଥିଲା) ସର... ଧର କାମନା ସବୁ
ପାରିଲନି...ପଲ୍ଲୀର ଲୋକେ, ଭାଇ ବନ୍ଧୁ ଆଗଭଳି
ହେଲେନି...ସପନାଚ ଆସିବ (ସାରଥୀ ବେଶି ଚଞ୍ଚଳ
ହୋଇ ପଡୁଛି) ସପନା ବ ସଙ୍ଗ ନଥାଏ ତୁମେ...ତୁମେ
ଆଜ ମୁଁ, ପାଗଳବାନ ସର । ଆରେ ତୁମେ (ସର ଝୁଲି
ଯାଉଥିଲା) ସର...

ସର— ନାଁ । ନାଁ । ତୁମେ କାମ ବନ୍ଦ କର । ବିଜୟା ଦଶମୀ ପରେ
ପୁଣି ଆରମ୍ଭ ହେବ...ମୁଁ ଆଜ ଦେବୀଙ୍କୁ..

ବାୟୁ—ସର !

ସର— ନାଁ । ତୁମେ ବୁଝିଲନି ..ତୁମେ..

(ସର ଝୁଲିଗଲେ, ବାୟୁ ହୃଦୟରେ ଅଜାଣ
ମଧ୍ୟ କମ କମ୍ପନ ସୃଷ୍ଟି କରିନି...ଯାଇ
ଆଖିବୁଜି ନମ୍ରନାକୁ ଆଜଙ୍କ ବସିଛି ।
ମାଇକ୍ରୁ ଭାସି ଆସୁଛି "ମୁଁ ତୁମର ଦୁର୍ବ-
ଳତା ନୁହେଁ—ମୁଁ ତୁମର ବନ୍ଧନ୍ ନୁହେଁ ;
ତୁମ ଅଗ୍ନି ପରୀକ୍ଷାର ସହଯାତ୍ରୀ । ବାପା ବାପା
ମୁଁ ତୁମ ପାଖେ ପାଖେ ଅଛି"—ବାୟୁ
ଚମକି ଉଠିପଡ଼ି ଚିତ୍କାର କରି ଉଠିଛି —)

ବାପ୍ପା—ଶୁଭ···ମୋ ଗୁଡ କ'ଣ ତୋ ପାଦ ଧୂଳିରେ ଧୂଳିଆ ହୋଇନ ଶୁଭ···ମୁଁ କ'ଣ ·ଶୁଭ···ଶୁଭରେ (ସପନା ପ୍ରବେଶ କରେ)

ସପନା— ବାପ୍ପା'ଇ ତୁମେ ଏକୁଟିଆ··

ବାପ୍ପା—(ଧୀରେ ଧୀରେ ମୁହଁ ଉଠାଇ· ·ଆଖିରେ ତାର ଅଗ୍ନି) ହଁ ଏକୁଟିଆ—ସପନା ତୁ ମତେ କହୁଥିଲୁନା ମୋ କଥା ଅକ୍ଷରେ ଅକ୍ଷରେ ପାଳନ କରିବୁ । ତୁଇ ମୋତେ କହୁ-ଥିଲୁ ନା ଶୁଭ ଅଛି—ଶୁଭ ଖୁବ୍ ଭଲରେ ଅଛି । କାହିଁ—କାହିଁ— କାହିଁ ଶୁଭ (ବେକ ଧରି ପକାଉଛି)

ସପନା—ଅଛି ବାପ୍ପା'ଇ ।

ବାପ୍ପା—ଅଛି ? କାହିଁ ? ତୁଇ କହୁଥିଲୁ ନା କାମ ସରିଗଲେ ଶୁଭକୁ ନେଇଆସି ମୋ କୋଳରେ ଟେକି ଦେବୁ । କାମତ ସରିଲା । ଆଉ ପହା ଅଛି କାହାର ଆସିବା ଦରକାର ନାହିଁ । ଏକା ଏକା ମୁଁ ପାରିବ । ହେଲେ ତୁ ମୋ ଶୁଭକୁ ନେଇଆ । ମୋ ଶୁଭକୁ ଫେରାଇଦେ ସପନା—

ସପନା—ଶୁଭ ଠିକ ଯାଗାରେ ଅଛି ବାପ୍ପା'ଇ । ଠିକ୍ ବେଳରେ ଫେରି ଆସିବ···

ବାପ୍ପା—ସପନା···ମୁଁ ସବୁ ଜାଣିଛି, ତୁ ମତେ ଠକି ଆସିଚୁ । ଏମିତ କହୁ କହୁ ଶିବୁଦାଦୀ ଯାହା କରି ନଥିଲେ ତୁ ତାଙ୍କ ଅପେକ୍ଷା···

ସପନା—ବାପ୍ପା'ଇ !

ବାପ୍ପା—ଲୋକଙ୍କ କଥାକୁ ବିଶ୍ୱାସ କରୁ ନଥିଲି । ହେଲେ ଆଜି ଶୁଭ୍ର ମୋତେ ନିଜେ କହିଲା, ଯେମିତି ପବନ ପବନରେ କହି ଉଠିଲା ସେ ଭିନ୍ନ ରୂପରେ···

ସପନା—ମିଛ ମିଛ ବାପ୍ପା'ଇ ।

ବାପ୍ପା—ମିଛ' (ଖୁବ୍ ଜୋରରେ ଚଟକଣାଏ ମାରିଛି ସପନାକୁ । ସପନା କାନ୍ଦୁ କାନ୍ଦୁ ହସି ହସି)

ସପନା—ମୁଁ ମିଛ କହୁଛି ? ଦେଖିବ ବାପ୍ପା'ଇ ଖଲୀନରେ ବସି ପଞ୍ଚପୁରରୁ ଇନ୍ଦ୍ରପ୍ରସ୍ଥର ପୃଥ ଶୁଭ୍ର ଫେରି ଆସିବ·· ଫେରିଲାଣିକି କ'ଣ ମୁଁ ଦେଖେ, ତୁମେ ଟିକିଏ ଅପେକ୍ଷା କର ।

(ସପନା ଗୁଳିଗଲା । ସପନାର ହସ କାନ୍ଦ ବାପ୍ପାକୁ ବିଚଳିତ କରିଛି । ଏ ଦ୍ୱନ୍ଦ୍ୱ ଭିତରେ ସେ ବିଶ୍ୱାସ କରି ପାରୁନି, ପୃଥଠୁ ଅଧିକ କରି ପାଳିଥିବା ସପନାକୁ ସେ ଆଘାତ ଦେଇ ପାରିଲା କିପରି ? ହଠାତ୍ ଦୂରରୁ ଖୋଳତାଳପୁର ଶବ୍ଦ, ବାପ୍ପା ସବୁତ୍ ଫେରି ପାଇଲା ବେଳକୁ ସଙ୍ଗ ଓ କହ କାନ୍ଧ ଉପରୁ ଓହ୍ଲାଇ ଆସୁଛନ୍ତି···ସଙ୍ଗଙ୍କୁ ବାପ୍ପା ଦେଖି)

ବାପ୍ପା—ମହାରାଜ···! ନିର୍ଦ୍ଦିଷ୍ଟ ସମୟ ତ ହୋଇନି···

ରାଜା—ମୁଁ ପ୍ରଜାଙ୍କୁ ଅବଶ୍ୟ ବରନ ବାଇଧର···

ବାପ୍ପା—ସମୟ ଦିଅନ୍ତୁ ଗୁରୁ ! ବେଶୀଦିନ ଆଉ ନୁହେଁ । ଏହି ମହାଷ୍ଟମୀ ଦିନହିଁ···

ରାଜା—ମୋର ଆଦେଶ—ପ୍ରତ୍ୟେକ କାରିଗର ରହିବେ ।: ବାଇଧରର ଆଦେଶ ହେବ ମାଙ୍ଗଳିକ କର୍ମର ଜୟଗାନ । ଆଜ ଏଥିରେ ଦିନ ନୁହେଁ, ମାସ ନୁହେଁ, ବର୍ଷ ବର୍ଷ, ଅନନ୍ତ ଯୁଗ ବିତିଗଲେ ବି ମୋର କ୍ଷୋଭ ନାହିଁ । କାଳ ବକ୍ଷରେ ଜୀବନର ପରୀକ୍ଷା

ବାପ୍ପା—ନା, ନା, ଗୁରୁ ! ଅନନ୍ତ କାଳ··· ! ମହିମା ଦେବତା ମୋର ! ଦେବତା ପାଖେ ବାପ୍ପା କଥା ଦେଇଛି । କଥା ଦେଲେ କଥା ରଖିବାକୁ ହୁଏ । କାମ ସରିବ । କାମ ନିଶ୍ଚୟ ସରିବ । (ପାଣି ଭରି ଉଠିଲା) ଲୋକ, ହାତୁଡ଼ିକଟା, ସପନା·· ଆଠର ଦୁଲା ନେଇ ଆସ—

(କହି ଗୋଟାଏ ଝିଅ ଲା, ଗୋଟାଏ ଭାବ-ପ୍ରବଣତା ଭିତରେ ସେ ଗ୍ରୂଳିଗଲା । ରାଜା ଠିଆ ହୋଇଛନ୍ତି ମୂକ ନିର୍ବାକ ହୋଇ)

ରାଜା—(ରାଜା ଓ କବି ବିସ୍ମୟ ଓ ବିସ୍ତାରିତ ନେତ୍ରରେ ଗ୍ରହିଁ ରହିଥାନ୍ତି) ଅପୂର୍ବ ଏ ସାଧନା···ଅଦ୍ଭୁତ ଏ ସାଧକ···

(ତତ୍‌ପରେ ଘଣ୍ଟା ଓ ଢକ ଶୁଭିଯାଉଛନ୍ତି ।
ଘୋଡ଼ା ଟାପୁର ଶବ୍ଦ )

(ଛୁଟି ଛୁଟି ଆସିଲେ ଶିବୁ ଓ ପାଣ୍ଡୁ)

ଶିବୁ—ଶୁଣିଲୁ, ଦେଖିଲୁ ପାଣ୍ଡୁ, ମହାରାଜା କେମିତି ମୁଣ୍ଡରେ ବସେଇଲେଣି ? ଏଥିରେ ଆଉ ହବ କଣ ? ଏହା ପରେ ମାନ୍ତ ଧନେବା ତୋ ପଢ଼ାରେ କ'ଣ ଆଉ ଫଳିବ ପାଣ୍ଡୁ ? ଆମକୁ ଏ କଂଟାଟକୁ ଦୂର କରିବାକୁ ହେବ ।

ପାଣ୍ଡୁ—ଆଉ ଫାବନା । ମଙ୍ଗଳା ଘଣ୍ଟ ଖୋଲେଇଲେ ଆମେ କ'ଣ କରିବା ?

ଶିବୁ—ଆରେ ରଖ ମଙ୍ଗଳା···ବାରଙ୍କାର ପଣ୍ଡିତେ ତାକୁ ଶେଷ କରି ପାରିବୁ । ଚଣ୍ଡି ୭ଟି, ବଳି ଦେଇ···

ପାଣ୍ଡୁ—ମୁଁ ପାଦବଳିଆ ସାଆନ୍ତେ !

ଶିବୁ—ନ ପାରିଲେ ଶୂଳରେ । ଲୋକା ଯାହା ଜାଣିଛୁ ସେତିକି ପ୍ରକାଶ ହେଲେ, ଭୂତ ସବୁଥିରେ ଅଛୁ । ଆଉ ରଖ ନାହିଁ···

ପାଣ୍ଡୁ—ଏଁ !

ଶିବୁ—ଦେଖ୍—ତୁ ଆଜ ଓଡ଼ନା । ତୋର ମୋର ଏକଆତ୍ମା । ତା ପାଖରେ ସବୁବେଳେ ଲୋକ । ସେମିତି ମାରି ହେବନି । ଅଷ୍ଟମୀରେ କାମ ହେବ । ବୁଝୁଛରେ ପଥର

ବସାଇଲ ନବଳେ ଏତେ ପାଣିକ କଏ ପିବ ? ହାଡ଼୍, ସପନା···ନା, ନା । ସେ ଯେତେବେଳେ ପିବ ସିଧା ମୂଣ୍ଡ ଉପରେ ପଥର ଗୁଡ଼ଦେବ । ଆଜ ଉଠି ପାରବନ··· ଅଷ୍ଟମୀର କାମ···ଦେଖା ବଳ ଖାଇବ···ବେଶ୍ ଯା'— ଯା' ତୋ ଚଟିକୁ ପଳା । ମନେରଖିଲ ? (ପାଣୁ ଗୁଳିଗଲା) ଶେଷ ଚେଷ୍ଟା···ସବୁଥିରେ ମୁଣ୍ଡହଲ ଗୁଡ଼ିପିବ··· (ଚମକି ପଡ଼) କଏ ?··· (ଲୁଚିଗଲା— ଧୀର ପଦକ୍ଷେପରେ । ମଂଚ ଅଂଧକାର ହେଲ )

—ঃ×ঃ—

## — ଷଷ୍ଠ ଦୃଶ୍ୟ —

'ଲେଙ୍କର ଘର । ଭିତର ବାରଣ୍ଡା । ସୁମୀ। କଦଳୀ ପଟରେ ଫୁଲମାଳ ଧରି ଯାଉଛି । ପିନ୍ଧିଛି ଛିଟ ଶାଢ଼ୀ । ଦ୍ୱିକକ୍ଷ ବେହରଣ । ଖୁବ୍ ସୁନ୍ଦର ଦିଶୁଛି— ଗଳୁ ବାହାର ଆସୁ ଆସୁ—

ସୁମୀ—କୁଆଡ଼କୁ ଯାଉଛନ୍ତି କେଜାଣିଲେ ମା ! ଯାଉଛନ୍ତି କହିଦେଇ କୁଆଡେ ଯେ ବୁଝିଲା ବେଳକୁ ନାହିଁ । ଆଜି ଆସନ୍ତୁ—କେତେବେଳେ ଆସିବେ କେଜାଣି । ସପନୀ କହୁଥିଲେ ଆଜ କେତେ ବେଢ଼ ପଥର ବାଲଗଲେ କାମ ସରିଗଲା । ଥରେ ହେଲେ ଯାଆନ୍ତେ ଭଲ ।

ଲୋକ—(ପ୍ରବେଶ କରି) ଯାଅ ଭଲ, ଯାଅ ଭଲ, ଯାଅ ଭଲ—
ଘରକୁ ଆସିଲେ ଯାଅ । ଘରୁ ଗଲେ, କୁଆଡ଼େ ଗଲେ ?
ମଣିଷ ଦାନ୍ତଭୂତ ହୋଇଯିବ···

ସ୍ୱାମୀ—ତୁମେ କାମ ଉପରକୁ ଗଲେ କେବେ ପଚାରିଛ କୁଆଡ଼େ ଯାଇଥିଲ ?

ଲୋକ—ତା ତୁମେ କେମିତି ପଚାରନ୍ତ ? ମୁଁ ତ ଯାଉଥିଲେ ବରାବର ଦେଖା ହୁଅନ୍ତା·

ସ୍ୱାମୀ—ସେଇ ଦେଖା ହେଉନି ବୋଲିତ ଖାଲି ମୁଁ ପଚାରିଲି ।

ଲୋକ—ଏ କଥା ମୁଁ କହିଲି ? ମୁଁ କହିଲି ଗଲେ ପଚାରୁଛ ।

ସ୍ୱାମୀ—ପୁଣି ଏଇ କଥା ?

ଲୋକ—ଯିବା କଥା ନୁହେଁ ଚନ୍ଦ୍ରମୁହଁ । ଘରୁ ଗଲେତ ପଚାରୁଛ—

ସ୍ୱାମୀ—ଏତେବଡ଼ କାମ ! କେତେ ଉତ୍ସାହରେ ଆଖପାଖ ସବୁ ଜନପଦର ଲୋକ କାମରେ ଲାଗିଛନ୍ତି । ସେଥିରେ ସାଆନ୍ତଙ୍କ ଉପରେ ସବୁ ଦାୟିତ୍ୱ···

ଲୋକ—ତୁମେ ବହୁତ ଜାଣିଛ ହେଲେ ଏ ଜାଣିବା କିଛି ନୁହେଁ । ଆଖପାଖ ଜନପଦର ଲୋକେ ଯେମିତି ଉତ୍ସାହରେ ଲାଗିଥିଲେ ସେମିତିକା କରେଇଥିଲା କିଏ ? କାମ ନକରି କରେଇଲେ ହେଲାନି ?

ସୁମୀ—ସ୍ୱାଙ୍କ ମୁଁହକୁ ଦେଖ—ସ୍ୱାଙ୍କ ଝରୁଥିବା ମୁଁହକୁ
ଦେଖ—ଚୂଳିଲ ସପନାକୁ ପଚୁରିବା—

ଲେକ—ସପନୀ କାହିଁକି ? କ'ଣ ମିଛ ? ଚାଲ ଢାପ୍ୱା'ଇ
ପାଖକୁ—ଚାଲ । (ସୁମୀକୁ ଧରି)

ସୁମୀ—ସାଆନ୍ତ୍ରଙ୍କ ପାଖକୁ ମୁଁ କେମିତି···(ଲେକ ହାତ ଛଡେଇ)

ଲେକ—ପିଙ୍କନାଚ, ଛାଡ । (ସୁମୀ ଯିବା ଦେଖି)ଅଧୁନା କୁଜଗଛସି ?

ସୁମୀ—ସାଧନାର ପଞ୍ଚ କ୍ଷେତକୁ, ଯେଉଁଠି ଏଇଲେ ପୂର୍ଣ୍ଣାହୁତି
ହଆଯିବ—ତୁମେ ଆସ—

ଲେକ—ଏଁ ! କଉ କାମପଗ ସରନ ? ପୁଷି କଏ ଯହ କାମଟେ
କହୁଦେଢ···

ସୁମୀ—ଆଲେ ମାଁ '! କାମ କରିବାକୁ ଏଡ଼କା ଡରୁଛଟି ?

ଲେକ—ତୁମେ ବୁଝିଲନ ଚନ୍ଦ୍ରମୁଣ୍ଡି, ଯେଠି କାମ କହୁଲେତ
ପଥର ବୁହା, ଟେକା, ବାଲି ବୁହା, ଥରେ ଆଜ ମୁଁ ।
ତୁମେ ଠିକଏ ଗଢ । ସବୁ କାମ' କ'ଣ ସବୁ ଲୋକଙ୍କ
ଦ୍ୱାରା ହୁଏ ?

ସୁମୀ—ଯାହା ହେବ କରୁନ । ଗୁଣ୍ଡୁଚି ମୂଷା ତ ପୁଣି ସିନ୍ଧୁ
ବଂଧନରେ ସାହାଯ୍ୟ କଲ···

ଲେଙ୍କ—ହଁ କହୁଛ ପଢ଼ା ପିଢ଼…

ସୁମୀ—କହୁଛୁ ପଢ଼ା ପିଢ଼ା କ'ଣମ ? ତୁମେ ମରଦ ପୁଅଟି ? ତୁମ ମନରେ ପଢ଼ା ବଳ ନାହିଁ, ଛି…ତୁମ ପିଲାଗୁଡ଼ାଙ୍କୁ କ'ଣ ଖେଦେବ କହିଲ ?

ଲେଙ୍କ—ହଁ, ହେଇନାହାନ୍ତି…

ସୁମୀ—(ବିରକ୍ତରେ) କ'ଣ କହିଲ ?

ଲେଙ୍କ—ଏଇ ମୁଁ ବାହାରିଲି ନଣ୍ଡିଙ୍କେ ! ଦୋସଢ଼ାଠା ନେଇ ଆସେ । (ଭିତରକୁ ଗଲା)

ସୁମୀ—ମୁଁ ତେବେ ଆଗ କାମ ଉପରକୁ ଯାଉଛି । ତୁମେ ଶୀଘ୍ର ଆସ—(ଲେଙ୍କ ଘର ଭିତରୁ ବାହାର ଦେଖିଲା ସୁମୀ ଚାଲିଗଲାଣି)

ଲେଙ୍କ—କାମ ଉପରକୁ ? ପୁଣି କେତେ ବେଳ ବାକି ଥିଲା ହେବାକୁ । ଆଚ୍ଛା,—(ଖୁସିରେ ପୁଣି ଘର ଭିତରକୁ ଫେରି ଆସିଛି)

## ସପ୍ତମ ଦୃଶ୍ୟ

[ପଲ୍ଲୀର ସେଇ ପ୍ରାନ୍ତର । ଗ୍ରାମବାସୀଙ୍କ କୋଳାହଳ — ମଂଚର ଅଂଧକାର ଭେଦକରି ମାଇକ୍‌ରୁ ଭାସି ଆସୁଛି — "ସ୍ୱପ୍ନ ବିଫଳ ହୁଏନା । ଅଂଚଳର ସ୍ୱପ୍ନକୁ ସାର୍ଥକ କରି ଗଢ଼ା ଉଠିଛି ପଥର ବାଂଧ । କାଳ ବକ୍ଷରେ ବାର୍ଦ୍ଧିକ୍ୟପେଣ୍ଡୁ କଣ୍ଠଙ୍କୁ ଅମର କରି ରଖିବାର ପ୍ରଚେଷ୍ଟା ଫଳବତୀ ହୋଇଛି । ଯଙ୍କପୁରର ପରମ ମାହେଶ୍ୱର — ପରମ ଭଟ୍ଟାରକ ମହା ଅଷ୍ଟମୀର ଉତ୍ସବ ମୁଖରିତ ପବ୍‌ଃଣୀରେ କାର୍ଯ୍ୟ ସମାପ୍ତି ଘ

ଆହୂତ ପାଇଁ ସମାଗତ । ଜନପଦର ଜନତା ସ୍ୱାଗତିକା ଲାଗି ବ୍ୟାକୁଳ···"

ଧଳ ଦଳ ହୋଇ ସ୍ତ୍ରୀ, ପୁରୁଷ ରଙ୍ଗ ବେରଙ୍ଗ ପୋଷାକରେ ଶଭଳ ବାଦ୍ୟ ଯନ୍ତ୍ରର ତାଳେ ତାଳେ ହୁଲିଝିକ, ଝଲାପିକା ଦ୍ରୁମାଳିଙ୍କାର ନୃତ୍ୟ ସଙ୍ଗର ପରିବେଷଣ କରି ଚାଲିଛନ୍ତି । ଦଳବଦ୍ଧ ପୁରୁଷ ଆସିଛନ୍ତି । ଘୋଡ଼ା, ନାଗା, ଘଣ୍ଟା-ବାଲା ଆସିଛନ୍ତି । ପାଇକ ନୃତ୍ୟ ଯାଉଛି । ତାପରେ ସ୍ତ୍ରୀ ପୁରୁଷ ମିଳିତ ଦଳ । ପରିଶେଷରେ ଆସିଲେ ଗୋଟିଏ ସ୍ତ୍ରୀ ଦଳ । ସମସ୍ତଙ୍କ କାଖରେ ପୂର୍ଣ୍ଣକୁମ୍ଭ । ମାଦଳ, ଗିନି, ଏକତାରା, ଚାଲିଛି । ହଠାତ୍ ମୁହଁଟି ଘୋଡ଼ାଇ ହୋଇ ଜଣେ ସ୍ତ୍ରୀ ଲୋକ ପ୍ରବେଶ କରିଛି । ସ୍ତ୍ରୀମାନଙ୍କ ସଙ୍ଗେ ନୃତ୍ୟ ଆରମ୍ଭ କରିଛି । କିନ୍ତୁ ତାର ନାରୀ ସୁଲଭ ନୃତ୍ୟରେ ସମତା ରହୁନି । ପ୍ରବେଶ କରୁଛି ସୁମୀ । ସୁମୀ ଦଳବଦ୍ଧ ନାଚରେ, ପରେ ପୂର୍ବାଗତା ନାରୀ ସହିତ ଯୁଗ୍ମ ନୃତ୍ୟରେ ନାଚିଲାବେଳେ ଓଢ଼ଣା ଟେକିଦେଇ ଦେଖିଛି ସେ ଲୋକ । ଲଜ୍ଜାରେ ସୁମୀ ମୁହଁ ଲାଲ ପଡ଼ିଯାଇଛି । ବିରକ୍ତିରେ ତାକୁ ନୃତ୍ୟ ଭିତରେ ଠେଲି ଦେଇଛି । ଅନ୍ୟମାନଙ୍କ

। ସଙ୍ଗୀତ ମିଶି ନାଚିଲ । ନୃତ୍ୟ ଖୁବ୍ ଜମି ଆସିଛି ହଠାତ୍ ଭିତରୁ ପାଟିହେଲା··
"ପଥର ଚଢ଼ିଗଲା··· ପଥର ପଡ଼ିଗଲା···
ହାତ୍ରୁ ଜକା···ସପନା···ବାପୁ'ଇ···"

ଗୀତ ବନ୍ଦ ହୋଇ ଯାଇଛି । ଝଡ଼ ଭଳିଆ ପ୍ରବେଶ କରିଛି ବାପୁ । ସର୍ବାଙ୍ଗ ତାର ଆର୍ଦ୍ର । ଅନେକ ତାକୁ ଧରିବାକୁ ଚେଷ୍ଟା କରୁଛନ୍ତି । ହେଲେ କେହି ତାକୁ ଅଟକାଇ ପାରୁନାହାନ୍ତି ।

ବାପୁ—ଆରେ କାହିଁକି··· କାହିଁକି ବନ୍ଦକଲ ? ଆଜି ମହାରାଜ ସଭେଇ କରିବେ । ଆମ ଜନପଦର ଆମେ ସମସ୍ତେ କଥାରେ ଯାହା, କାମରେ ସେଇଆ, ଆଜି ପୂର୍ଣ୍ଣାହୁତି ପଡ଼ିଲା । କାମତ ସରିଗଲା । ଆନନ୍ଦ କର । ଉତ୍ସବ କର । ବାପୁର କ'ଣ ଯାଏ ? ଏଣିକି ବଢ଼ାନାସୀ ଚାନ୍ଦ୍ରା ସାଗ ମୂଳକର । (ଶିବୁ ପ୍ରବେଶ କରିଛି, ବାପୁ ଶିବୁକୁ ଦେଖି) ଦାଦା ଆନନ୍ଦ କର । ଦାଦା (ଠିକ୍ ଶିବୁ ପାଦ ପାଖରେ ପଡ଼ିଲେ, ଲୋକେ ବାପୁକୁ ଧରି ରୂଳିଗଲେ । ପଡ଼ିଥିବା ରକ୍ତ ଦେଖି ଶିବୁ ଖୁବ୍ ଜୋରରେ ପାଟିଛାଏ କରିଛି । ଟିକିଏ ରକ୍ତକୁ ଆଙ୍ଗୁଠି ଲଗାଇ ମୁଁହ ପରି ରହିଯାଇଛି । ଅନ୍ୟ ଜଗରୁ ପ୍ରବେଶ କରିଛି ଭଗ୍ନ ସ୍ୱାସ୍ଥ୍ୟ, ଅପାରଗ ଅତୀତର ଅନବଦ୍ୟା ସରି).

ଷର—ଦାଦା ! ସେ···(ରକ୍ତକୁ) ଏଁ···କ'ଣ ହେଲ କ'ଣ ହେଲ ଦାଦା ? ମୁଁ କଣ ତୁମକୁ ବାପର ସମ୍ମାନ ଦୋଇନ ? ମୋ କପାଳରୁ ସିନ୍ଦୂର ଟିକକ ପୋଛି ଦେଇ (କାନ୍ଦ) ପୂର୍ବ ଜନ୍ମରେ କିଛି ନହେଲେ ବ ଏ ଜନ୍ମର ତପସ୍ୟା, ଏ ଦେହର ସାଧନ, କ'ଣ ଏଇ ଫଳ ଫଳେଇଲ ଦଦା ? ପଥର ପଥର···ନିଷ୍ଠୁର ତୁମେ ଭଗବାନ···ତୁମେ ମୂକ, ପଙ୍ଗୁ, ଅଥବ···(ମଂଚ ଅଂଧକାର ହେଲ)

(ଶିବୁ ମୁଣ୍ଡ ହଲଉଥାଏ । ନବାକ ସେ । ହଠାତ୍ ମଂଚକୁ କଳା ପରଦାଟିଏ ଲମ୍ବି ହୋଇ ଆସିଛି । ଦୁଇଟି ଛାୟା ମୂର୍ତ୍ତିର ଅର୍ଥ ଦ୍ୟୋତକ ଏକ ନୃତ୍ୟ—ଯାହାକି ସୂଚନା ଦିଏ ମୃତ୍ୟୁର···ପରଲୋକର···। ନୃତ୍ୟପରେ ମଂଚ ଅନ୍ଧକାର ହେଲ । କଳା ପରଦା ଅପସାରିତ ହୋଇ ଯାଇଛି । ମଂଚ ଉପରେ ପାଗଳ ଶିବୁ ଦାଦ ।)

ଶିବୁ—ନା, ନା, ନା, ଏଇତ ଗାଧୁଆ ବେଳ ହେଲ । ପୂର୍ଣ୍ଣମୀ, ବେଳା ଅମୃତ । ସମସ୍ତଙ୍କୁ ବାସ୍ନା ବାସ୍ନା କରିଦେଲ । ମୁଁ ଏକୁଟିଆ ଟିକେ ରହିଲି । ସମସ୍ତ ଭଲିଯିବ । (ଚମକି ପଡ଼ିଲ) ଏଁ, ଏଁ, ଏ ନରକପୁରୀ । ନା ନା, କାହିଁକି, କାହିଁକି ଅର୍ଗଳ ଖୋଲୁଛ ? ବେଶ୍··· (ହସି ଉଠିଛି) ମୁଁ ଯିବ । ହେଲେ—ହେଲେ ତା' ପୂର୍ବରୁ ମୁଁ ଥରେ, ଥରେ କହିଦିଏ ସତ୍ୟ ମାହେଶ୍ବର ପରମ ଭକ୍ତାବକ ମୋତେ

କ୍ଷମା କରିବା ତୁମ୍ଭ ଅନୁ । ନା, ନା, ସଜାଗ ଲୋକଶକ୍ତି ଦୁର୍ବାର, ଦୁର୍ଦ୍ଧର୍ଷ ; ସେମାନେ କଣ ଛାଡ଼ିବେ ?··· ତା'ପରେ, ତା'ପରେ ମୋ' ଉପରେ ପଡ଼ିବ ପାହାଡ଼, 'ପର୍ବତ । କୁଳୀଶ, କୁଳୀଶ ବୃଷ୍ଟି··· (ହସିଉଠିଛି) ରହ, ରହ ମୁଁ ଯିବି, ମୁଁ ଯିବି । ମୋତେ ମାର । ବାପ୍ପାଙ୍କୁ ଛାଡ଼ । ସେ ବ୍ରାହ୍ମଣ-ର ବ୍ରାହ୍ମଣ, ଗୁରୁର ଗୁରୁ । ପୁରଜନର ପୁରଜନ, ରଜାର ରଜା, ମୁଁ···ମୁଁ··· ମୋତେ ମାର । (ମଂଚ ଅନ୍ଧକାର ହେଲା)

ମାଇକ୍ରରୁ ଭାସି ଆସୁଛି:—"କାଠଯୋଡ଼ିର କବଳ ଜଳତରଙ୍ଗ ଆଜି ସ୍ଥିର—ଶାନ୍ତ । ଶିଳା ଶାଳଗ୍ରାମର ପାଦପ୍ରାନ୍ତରେ ଜଳ-ତରଙ୍ଗ ବାନ୍ଧି ଦେଇଛି ଭକ୍ତର ନୈବେଦ୍ୟ, ହେଲେ ପୂଜକ କାହିଁ ? ସମଗ୍ର ସାମ୍ରାଜ୍ୟ ପୁଷ୍ପସ୍ତବକ ହସ୍ତରେ ଅଭିନନ୍ଦନ ଅଭି-ଳାଷରେ ପ୍ରତୀକ୍ଷମାଣ । ବ୍ୟକ୍ତି, ଗୋଷ୍ଠୀ, ଦଳ, ଜନପଦ, ପୁରପଲ୍ଲୀ ପ୍ରଭୃତିର ଚକ୍ଷୁ ତାରକା ସ୍ଥିର । ଅମର ବିଶ୍ୱାସ, ଅଖଣ୍ଡ ଆଶା ପୂର୍ଣ୍ଣିମୀ ଉନ୍ମୋଚନ ବେଳାରେ ଅଂଶ ନେବ ବୋଇଧର । ଆଖି ପୁରେଇ ଦେଖିବ, ମନ ଭରି ଅନୁଭବ କରିବ । ଏଇତ ଗଲା ନବମୀ, ଦଶମୀ, ଏକାଦଶୀ, ଦ୍ୱାଦଶୀ, ତ୍ରୟୋଦଶୀ, ଚତୁର୍ଦ୍ଦଶୀ··· ଆଶା ଆଶ୍ୱାସନା କୂଳ ଲଙ୍ଘିଛି । ମାନ

ଆଜି କେତୋଟି ମୁହୂର୍ତ୍ତ···ହେଲେ ମନର ଗତି ଜଳାଣି ବଢେ ।"

(ମାଇକ୍ ଘୋଷଣାର କ୍ଷଣକ ନୀରବତା ପରେ ଦୂରରୁ ଏକ କରୁଣ ରାଗିଣୀ ଭାସି ଆସୁଥିଲା । ଶୁଭୁଥିଲା: —)

"ବାପ୍ପା'ଇ ଚରଣ ଛୁଇଁ ତୋର ଶପଥ କରିଥିଲି । ତା' କ'ଣ ମୁଁ ଅକ୍ଷରେ ଅକ୍ଷରେ ପାଳନ କରିନି ? ଶୁଭ ତୁମର ସବୁ,ଶୁଭରେ ଅଛୁ । ଶୁଭ ଫେରି ଆସିବ ନୂଆବୋଉ··· ତୁମେ ଶୁଣିଲ—ବାପ୍ପା'ଇ···ଶୁଭକୁ ନେଇ ଭଗବାନଙ୍କ ପାଖରେ ରଖିଥିଲ । ପାତାଳ ଯାଇଛୁ—ଶୁଭ ଫେରି ଆସୁଥିବ···ତୁମେ ଗୁହଂ···ତୁମେ ହସ, ବାପ୍ପାଭାଇ···(ବାପ୍ପା ନିଏ ଶେଷ ଶ୍ୱାସ, କରୁଣତା ବଢ଼ିଯାଏ)

—୧୦୫—

## ଶେଷ ଦୃଶ୍ୟ

[ନଈ ବନ୍ଧ । ନଈ ବାଙ୍କରେ ଅସ୍ତଗାମୀ ସୂର୍ଯ୍ୟର ତିର୍ଯ୍ୟକ କନକ କିରଣ ସମ୍ପାତରେ ସୁନୀଳ ଜଳର ସ୍ୱଚ୍ଛତା ସ୍ପଷ୍ଟ । ମୁଗ୍ଧା ପ୍ରକୃତି । ସୁନ୍ଦର ସଫତ ସ୍ରୋତର ଗର୍ଜ୍ଜନ ଏକ ନିରର୍ଥକ 'ପ୍ରସ୍ୱାସ ପର ପ୍ରତିସ୍ୱମାନ ହୁଏ । ସାମଗ୍ରୀକ ଭାବେ ମନେହୁଏ ଏ ସନ୍ଧ୍ୟା ଯେପରି ପୂର୍ଣ୍ଣମୀ—ପୂର୍ଣ୍ଣଚନ୍ଦ୍ରକୁ ଅଭିନନ୍ଦନ ଜଣାଇବାକୁ ଅପେକ୍ଷା କରିଛି । ବନ୍ଧର ନିମ୍ନଭାଗରେ ପୁଷ୍ପମାଳ ଚର୍ଚ୍ଚିତ ଶ୍ୱେତ ଆସ୍ତରଣ ତଳେ 'ମୁକ୍ତ ପକ୍ଷୀ ବାୟୁ

ଓ ସର ଚନୁ ଅଂବାକୁ ଘୁଡ଼ କୁଆଡେ ଉଡ଼ି ଯାଇଛନ୍ତି । ଚତୁର୍ଦ୍ଦିଗ ନିଶୂନ, ନିସ୍ତେଜ, ନିଷ୍କଳ । ସପନା ବସିଛି ବୃନ୍ଦାଂକ ପାଦତଳେ । ହାତ ପଡ଼ିଚ ପାଦ ଉପରେ । ଗ୍ରାମବାସୀ ସ୍ତ୍ରୀ ପୁରୁଷ ନୀରବରେ ଅଶ୍ରୁ ମୋଚନ କରୁଛନ୍ତି । ପ୍ରବେଶ କରିଛି ଶୁଭ ।

ଶୁଭ — ସପନା କକା, ସପନା କକା ! (ଯାଇ ଯାଇ) ଏଁ, ତୁମେ କାନ୍ଦୁଛ ? ବଂଧ କାମ ସରିଲା ପରା ? (ଶଯ୍ୟାର ଶୁଭ୍ର ଆସ୍ତରଣକୁ ଚାହିଁ) ବାପା ମୁଁ ଫେରି ଆସିଛି ବାପା· ମା’, ମା’, ମା’···ସପନା କକା ! (ଧୀରେ ଧୀରେ ଉଠି ଯାଇ ଯାଇ ହାତ୍ଠି, ଲୋକ ଓ ଗ୍ରାମର ସ୍ତ୍ରୀମାନଙ୍କୁ ଜଣ ଜଣ କରି ପ୍ରଶ୍ନିଳ ଆଖିରେ ଚାହିଁ ଯାଉଛି । ଶେଷକୁ ଯାଉଛି କଳିଙ୍ଗାଧିପତିଂକ ନିକଟକୁ । ସେଠାରୁ କବିଙ୍କ ପାଖକୁ । ସମସ୍ତଙ୍କର ମସ୍ତକ ଆନତ । ଶେଷକୁ ଫେରି ଆସିଛି ସପନା ପାଖକୁ) ସପନା କକା ! (ଚକ୍ଷୁର ଅଶ୍ରୁଜଳ ଆଷାଢ଼ର ବାରିଧାରା ପରି ଝରି ଆସୁଛି । ସେ ଯେପରି ଆଜ ବାଧା ବଂଧନ ମାନୁନି) ଆକାଶ ମୋର ଜନକ । ବାପା ମୋର ଆକାଶଠାରୁ ଆହୁରି ବଡ଼, ବସୁଧା ମୋର ଜନନୀ, ମା ମୋର ବସୁଧାଠାରୁ ଆହୁରି ବଡ଼ । ବାପା ମୋର ବଂଚିବେ,··· ମା’ ମୋର ବଂଚିବେ । ମୁଁ କ’ଣ ବାଇଧର ବାଇଶିବାଉ ବଂଶଧର ନୁହେଁ ? ମୁଁ ପାରିବି··· ନିଶ୍ଚୟ ପାରିବି । ପ୍ରତିପାଳ,

ପରିପ୍ରଶ୍ନ. ତେବେ। ସବୁ··· ସବୁ ଅନ୍ଧାରରେ ଦେଇ ମୁଁ ପଚାରିବି···ନଚିକେତାଙ୍କ ପରି ନିଷ୍ପ୍ରଶ୍ନ ପଚାରିବି··

(ସମସ୍ତେ ଗୃହାଁଛନ୍ତି, ଶୁଭ୍ର ଝମେ ବଂଧ ଉପରକୁ ଉଠି ଯାଉଛନ୍ତି । ଭଗବାନଙ୍କ ସୃଷ୍ଟିରେ ଧର୍ମଚକ୍ର କ'ଣ,ପାପ ପୁଣ୍ୟ କ'ଣ ସତେ ଯେପରି ସଙ୍ଗୀତର ତାଳେ ତାଳେ ଅଭିମାନଭରା ସ୍ୱରରେ ପଚାରି ସ୍ରଷ୍ଟାଙ୍କୁ ଉତ୍କଣ୍ଠିତ କରୁଛନ୍ତି । ଝମେ ଆଲୋକ କ୍ଷୀଣ ହୋଇ ଆସେ । ଅସ୍ତଗାମୀ ସୂର୍ଯ୍ୟର କନକ କିରଣ, ବଦ୍‌ବଳୟକୁ ଛାୟାଙ୍କ ଭାବେ ଛେଦ କରୁଥାଏ । ସେଇ ଶୁଭ୍ର ଶଯ୍ୟା ଝମେ ପ୍ରସ୍ତର ପରି ମନେ ହେଉଛି । ଦୂରରୁ··· ଖୁବ୍ ଦୂରରୁ ଗୁରୁଗଂଭୀର କଂଠରୁ ଭାସି ଆସୁଛି ଉଦାତ୍ତ ଛନ୍ଦ···)

ପୂର୍ଣ୍ଣ ମଦଃ ପୂର୍ଣ୍ଣ ମିଦଂ

ପୂର୍ଣ୍ଣାତ୍ ପୂର୍ଣ୍ଣ ମୁଦଚ୍ୟତେ···

ପୂର୍ଣ୍ଣସ୍ୟ ପୂର୍ଣ୍ଣାମାଦାୟ

ପୂର୍ଣ୍ଣମେବା ବଶିଷ୍ୟତେ···॥

(ମଂଚ ଅଂଧକାର ହୋଇ ଆସିଲ—ଦୂରରୁ ଶୁଣାଯାଉଥିଲା)

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ
ନବାନି ଗୃହ୍ଣାତି ନରୋପରାଣି
ତଥା ଶରୀରାଣି ବିହାୟ ଜୀର୍ଣ୍ଣା
ନ୍ୟନ୍ୟାନି ସଂଯାତି ନବାନି ଦେହୀ ।

ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି
ନୈନଂ ଦହତି ପାବକଃ
ନ ଚୈନଂ କ୍ଲେଦୟନ୍ତ୍ୟାପୋ
ନ ଶୋଷୟତି ମାରୁତଃ ।।

ଗୀତାର ଆବୃତ୍ତି ସରି ଆସିଲା ବେଳକୁ ଛାୟାଲୋକିତ ମଂଚରେ ଚିତାର ଶେଷ ଶିଖା ଦେଖାଦେଉଛି··· ଚିତା ପାଖରେ କେତେକ ଲୋକ । ସେଇ ନଇ ବଂଧରେ ସପନା ବାପ୍ପାପର ବସିଛି—ପାଖରେ ଠିଆ ହୋଇଛି ଶୁଭ—ପତନିକା ନଇଁ ଆସିଛି ।

ସମାପ୍ତ